ପ୍ରାଚୀନ କବି : ନୂତନ ପରୀକ୍ଷା ଗ୍ରନ୍ଥମାଳା-୧

# କବି ଅର୍ଜୁନ ଦାସ


ଡକ୍ଟର କ୍ଷେତ୍ରବାସୀ ନାୟକ

ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ରେଭେନ୍ସା କଲେଜ, କଟକ



ସାରସ୍ୱତ ପ୍ରକାଶନୀ

ସାରସ୍ୱତ ନିଳୟ

ଶ୍ରୀ ଅରବିନ୍ଦ ନଗର

କଟକ-୧୦

**କବି ଅର୍ଜୁନ ଦାସ**

ଡକ୍ଟର କ୍ଷେତ୍ରବାସୀ ନାୟକ

ପ୍ରକାଶକ : **ସାରସ୍ୱତ ପ୍ରକାଶନୀ**

କଟକ-୭୫୩୦୧୦

ପ୍ରଚ୍ଛଦ :

ଶିଳ୍ପୀ ଶ୍ରୀ ଛନ୍ଦା ଆଗ୍ରୱାଲ

ପ୍ରଥମ ପ୍ରକାଶ :

୧୫ ଅଗଷ୍ଟ ୧୯୮୩

ମୂଲ୍ୟ : ସାତଟଙ୍କା

KAVI ARJUN DAS

(A Monograph)

by **Dr. Kshetrabasi Nayak**, *M.A.Ph.D.*

Published by :

Saraswat Prakashani,

Sri Aurobindo Nagar,

Cuttack-753010

Date of Publication : 15th August, 1983

Price : Rupees Seven only.

ଆମ କଳା-କୃଷ୍ଟିର ନୃତ୍ୟଉତ୍ସ ଲୀଳାମୟ ପ୍ରଭୁ ! କାଳିଆଠାକୁରଙ୍କ ଶ୍ରୀଚରଣେ ସମର୍ପିତ·········

॥ ପ୍ରଣତ ॥

କ୍ଷେତ୍ରବାସୀ

# ସୂଚନା

ସାହିତ୍ୟ-ସମାଲୋଚନାର ପାରମ୍ପରିକ ଟେକ୍‌ନିକ୍ ଯଥାସମ୍ଭବ ପରିହାରକରି ଆଧୁନିକ ଅନ୍ତର୍ଦୃଷ୍ଟି ବିନିଯୋଗରେ କବିସମୀକ୍ଷା ଲାଗି ଏଥିରେ ଯତ୍‌କିଞ୍ଚିତ୍ ଉଦ୍ୟମ କରାଯାଇଛି । କବିର ଅନ୍ତର୍ବିଶ୍ୱାସ, ଉଚ୍ଚାରଣର ନାନ୍ଦନିକ ସ୍ୱଧର୍ମ, କାବ୍ୟ ସହ କବି ଆତ୍ମାର ସଂପର୍କ, ଆହରଣ ଓ ଅଭିବ୍ୟକ୍ତି କ୍ଷେତ୍ରରେ ନିଜସ୍ୱ ଦେୟ, ସମକାଳୀନ କାବ୍ୟ-ଶିଳ୍ପ ଓ ସଂସର୍ଗର କଷଟିରେ କବି-କୃତିର ଅନନ୍ୟତା ଅନୁସନ୍ଧାନ ଇତ୍ୟାଦି ଅବଲମ୍ବନର ଆଶ୍ରୟରେ ଆଲୋଚନାକୁ ଆକାର ଦିଆଯାଇଛି । ଜଣେ ପ୍ରାଚୀନ କବିଙ୍କୁ ଆଧୁନିକ ଦୃଷ୍ଟିରେ ଆଲୋଚନା କଲାବେଳେ ଆହୁରି ଅଧିକ ଅବଲମ୍ବନର ଆଶ୍ରୟ ନିଆ ଯାଇପାରେ । ତୁଳନାତ୍ମକ ଶୈଳୀର ସହାୟତାରେ କିମ୍ବା ଆନ୍ତର୍ବିଦ୍ୟାନୁଶୀଳନ ପନ୍ଥାରେ ତାହାକୁ ଅଧ୍ୟୟନ କରାଯାଇପାରେ ।

ଏ ଦିଗରେ ମୋର ପ୍ରଚେଷ୍ଟା ସାମାନ୍ୟ ମାତ୍ର; ପ୍ରାଚୀନ କବିମାନଙ୍କ ସମ୍ପର୍କରେ ନୂତନ ନିରୀକ୍ଷାର ଶୁଭାରମ୍ଭ । ଏହା ଏକ ନମୁନା ହୋଇ ପାରିବ କି ନା ଜାଣିନି, ବିଦଗ୍ଧ ଗଣ କହିବେ, ସେମାନଙ୍କ ମୂଲ୍ୟବାନ ପରାମର୍ଶ ମୋର କାମ୍ୟ ।

୧୫, ଅଗଷ୍ଟ ୧୯୮୩ । ଇତି ।

ସାରସ୍ୱତ ନିଳୟ,
ଶ୍ରୀ ଅରବିନ୍ଦ ନଗର
କଟକ-୧୦,

**କ୍ଷେତ୍ରବାସୀ ନାୟକ**

ଏଇ ଲେଖକଙ୍କର

କବି ସମୀକ୍ଷା-ମୂଳକ କେତୋଟି ମନୋଗ୍ରାଫ୍

୧- କବି ନୀଳକଣ୍ଠ [୧୯୬୨]

୨- କବି ଚରିତ : ରାଧାନାଥ [୧୯୭୫, ୧୯୮୦]

୩- ନାରୀ କବି ଅନ୍ନପୂର୍ଣ୍ଣା : କବି ଚରିତ ଓ କାବ୍ୟଚର୍ଚ୍ଚା [୧୯୭୯]

# କବିଙ୍କ ସମୟ : ଏକ ସୂଚନା

ଆଲୋଚକମାନେ କବି ଅର୍ଜୁନ ଦାସଙ୍କର ସମୟ ନିମ୍ନମତେ ନିରୂପଣ କରିଥିବା ଜଣାଯାଏ ।

### ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି

'ଅର୍ଜୁନ ଦାସଙ୍କୁ ୧୫ଶ ଶତାବ୍ଦୀର ଶେଷ ଭାଗ ଓ ୧୬ଶ ଶତାବ୍ଦୀର ଆଦ୍ୟଭାଗର କବି ନିଃସନ୍ଦେହରେ କହିପାରୁଁ' ।
(ରାମବିଭା—ପ୍ରାଚୀ ସଂସ୍କରଣ, ମୁଖବନ୍ଧ)

### ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ

'ତାଙ୍କୁ (ଅର୍ଜୁନ ଦାସ) ସାରଳା ଦାସଙ୍କ ପର ସମୟର କବି ବୋଲିବାକୁ ହେବ' ।
(ଓଡ଼ିଆ ସାହିତ୍ୟର ଇତିହାସ—ପ୍ରଥମଭାଗ)

### ଶ୍ରୀ ସୁରେନ୍ଦ୍ର ମହାନ୍ତି

'ଅର୍ଜୁନ ଦାସଙ୍କୁ ସାରଳାଙ୍କ ସମସାମୟିକ ରୂପେ ନିର୍ଣ୍ଣିତ ଭାବରେ ଗ୍ରହଣ କରାଯାଇପାରେ ।'
(ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ)

### ଶ୍ରୀ କେଦାରନାଥ ମହାପାତ୍ର

'କବି ଅର୍ଜୁନ ଦାସଙ୍କ ଆବିର୍ଭାବ କାଳ ୧୫୨୦ରୁ ୧୫୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ବିବାଦରେ ନିର୍ଦ୍ଧାରିତ ହୋଇପାରେ ।'
(କଳ୍ପଲତା—ମୁଖବନ୍ଧ)

# କବି ଓ କାବ୍ୟ

ଓଡ଼ିଆ କାବ୍ୟ-ରଚନାର ଇତିହାସରେ କଥିତ ବହୁ କବି ଓ କାବ୍ୟ କୃତିର ସଂବାଦ ବିଦଗ୍ଧ କାବ୍ୟାମୋଦୀଙ୍କୁ ଅଜଣା ନୁହେଁ, ସେହିପରି ସେମାନଙ୍କ କବିମନୀଷା ସଗବେଷଣାର ଇତିକଥା । ଇତିହାସରୁ ସୂଚନାମିଳେ ଯେ, ଓଡ଼ିଶାର କବି ଓ ସ୍ଥପତି ପ୍ରତ୍ୟେକ ହେଉଛନ୍ତି ସୌନ୍ଦର୍ଯ୍ୟ ଓ ଭାସ୍କର୍ଯ୍ୟର ସଂଭ୍ରାନ୍ତ ରୂପକାର । ସେମାନଙ୍କ ନିପୁଣ ହସ୍ତ କେତେବେଳେ ହୁଏତ କଳାର କୋଣାର୍କ ତୋଳନ୍ତି ତ

କେତେବେଳେ ଏହା ରସ ଗୂଢ଼ାର୍ଥ୍ୟର ବଳାସ-ବୈଦାଗ ଫଗୂର କରିଛି । ଜୀବନର ଅମୃତ ପ୍ରତ୍ୟୟଗୁଡ଼ିକୁ ରସ-ଗମ୍ଭୀର ଆଲେଖ୍ୟ ଦେବାରେ କବିର ହସ୍ତାକ୍ଷର ସଂକୁଚିତ ହୋଇଯାଇନାହିଁ କମ୍ବା ଶିଳ୍ପୀର ନିର୍ମାଣ ମଧ୍ୟ ଥମିଯାଇ ନାହିଁ । ପରମ୍ପରାର ଚଳପଥରେ ଗୂଳ ହିତ-ଦାୟୀ ଜୀବନର ଐଶ୍ୱର୍ଯ୍ୟକୁ ନାନାମତେ ଖୋଜିବାର ବ୍ୟଗ୍ର କାମନାହିଁ କବି-କୁଳ ପ୍ରକାଶ କରିଛନ୍ତି । ସେମାନଙ୍କ ଲେଖନୀରୁ ଯେଉଁ କାବ୍ୟ-କୀର୍ତ୍ତିର ଉଦ୍‌ଭବ ହୋଇଛି, ତାହା ବିଭବଶାଳୀ ଓଡ଼ିଆର ମନ୍ମୟ ଅଭିନିବେଶକୁ ସ୍ଥଳେସ୍ଥଳେ ରସ-ରୂପ ଦେବାରେ କୌଣସି ତ୍ରୁଟି କରିନାହିଁ କହିଲେ ଚଳେ ।

ଏ ଜାତିର ଐତିହ୍ୟ ଓ ଆଭିଜାତ୍ୟର ଆଲେଖ୍ୟ ଯଦ୍ଧତାର କାବ୍ୟ ଓ କଳା କର୍ମ ହୁଏ, ତେବେ ସେହି ଶିଳ୍ପୀ ବା କବି-ପୁରୁଷର ଅନ୍ୱେଷଣ ଓ ଅନୁଶୀଳନ ହେଉଛି ଉତ୍ତରାଧିକାରୀର ଜାତୀୟ ଦାୟିତ୍ୱ । ଉତ୍ତରାଧିକାର ସୂତ୍ରରେ ଯେଉଁ କବିଗଣ କାବ୍ୟ-କୁମାରୀଙ୍କ ଲାଳନ ପାଳନରେ ଆପଣାର ସାମର୍ଥ୍ୟ ବିନିଯୋଗ କରି ଇତିହାସରେ ସ୍ମରଣୀୟ ମର୍ଯ୍ୟାଦା ନେଇଛନ୍ତି, ସେମାନଙ୍କର ଅଗ୍ରଜ ହେଉଛନ୍ତି, କବି ଅର୍ଜୁନ ଦାସ (୧୬ଶ ଶତାବ୍ଦୀ) ।

ସାହିତ୍ୟର ଇତିହାସରେ କବିଙ୍କୁ ସାରଳା ଦାସଙ୍କ ସମସାମୟିକ ଅଥବା ପରବର୍ତ୍ତୀ ବୋଲି ଚିହ୍ନିତ କରାଯାଇଛି । କବିଙ୍କ ସମୟ ନେଇ ନାନା ମତର ପ୍ରଚଳନ ଥିଲେ ମଧ୍ୟ ଆଲୋଚକ ପଣ୍ଡିତ ମାନେ ପ୍ରାୟ ଏକମତ ଯେ, କବି ଅର୍ଜୁନ ଦାସ ହେଉଛନ୍ତି ଷୋଡ଼ଶ ଶତାବ୍ଦୀର କବି ।

ଆଲୋଚକମାନଙ୍କ ଉଲ୍ଲେଖରୁ ଜଣାଯାଏ ଯେ ଏ ଯାବତ୍ ଆବିଷ୍କୃତ ଓଡ଼ିଆ କାବ୍ୟ-କୃତି ମଧ୍ୟରୁ କବି ଅର୍ଜୁନ ଦାସଙ୍କ ରଚନା ହେଉଛି ପ୍ରାଚୀନତମ; ତେଣୁ ସେ ହେଉଛନ୍ତି ଓଡ଼ିଆ କାବ୍ୟ ସାମ୍ରାଜ୍ୟର ଆଦିମ କାବ୍ୟକାର । ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀ ପୁରାଣ ଇତ୍ୟାଦିର ସ୍ରଷ୍ଟା ସାରଳା ଦାସଙ୍କ ରଚନାରୁ ଓଡ଼ିଆ କାବ୍ୟ-ସାହିତ୍ୟର ଯେଉଁ ଅଭିବ୍ୟକ୍ତିର ସୂଚନା ମିଳିଥିଲା, ତାହାକୁ ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ (**Epic of Growth**) * ଓ ପୁରାଣର ଅଂଗରୂପେ

---

**Epic of Growth** : ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ—

ପାଶ୍ଚାତ୍ତ୍ୟ ସାହିତ୍ୟରେ ଏପିକକୁ ଦୁଇଟି ଶ୍ରେଣୀରେ ପ୍ରଧାନତଃ ବିଭକ୍ତ କରାଯାଇଥାଏ । ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ ଏପିକ ଅଫ୍ ଗ୍ରୋଥ ଏବଂ ସାହିତ୍ୟିକ ମହାକାବ୍ୟ ବା ଏପିକ ଅଫ୍ ଆର୍ଟ । ଯେଉଁଥିରେ ଜାତୀୟ ବୀରତ୍ୱ ବ୍ୟଞ୍ଜକ ଲୋକଗାଥା, ପ୍ରଚଳିତ କିଂବଦନ୍ତୀ, ପୁରାଣ କଥା ଇତ୍ୟାଦି ସଂଗୃହିତ ହୋଇ ସୁସମଞ୍ଜସ ଓ ସୁବିନ୍ୟସ୍ତ ରୂପ ଲାଭ କରିଥାଏ, ତାହାକୁ ଏପିକ୍ ଅଫ୍ ଗ୍ରୋଥ କୁହାଯାଏ । ଭାରତୀୟ ସାହିତ୍ୟରେ ବାଲ୍ମୀକି ଓ ବ୍ୟାସ ରଚିତ ରାମାୟଣ, ମହାଭାରତ ଏବଂ ଗ୍ରୀକ ସାହିତ୍ୟରେ ହୋମାର ରଚିତ ଇଲିଆଡ, ଓଡେସି ପ୍ରଭୃତି ଏହି ଜାତୀୟ ରଚନା ।

କିନ୍ତୁ ଏପିକ୍ ଅଫ୍ ଆର୍ଟ ହେଉଛି, କାବ୍ୟଶାସ୍ତ୍ର ଓ ଅଳଂକାର ବିଧି ସମ୍ମତ ରଚନା । ସାହିତ୍ୟିକ ମହାକାବ୍ୟ, ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ ଠାରୁ କାହାଣୀର ଉପାଦାନ ସଂଗ୍ରହ କରି ରଚିତ ହୋଇଥାଏ । ଦେଶର ଇତିହାସ ଏବଂ ଅନ୍ୟାନ୍ୟ ଘଟଣାବଳୀକୁ ଏହା ଅଙ୍ଗୀଭୂତ କରିପାରେ । କଳା-ସୌଷ୍ଠବ ସଂପାଦନ ଲାଗି ତତ୍ପର କବି-ପ୍ରୟାସ ଏଥିରେ ଏକ ଅପରିହାର୍ଯ୍ୟ ଆବଶ୍ୟକତା ରୂପେ ଗଣ୍ୟ ହୁଏ । କାଳିଦାସଙ୍କର ରଘୁବଂଶ, କୁମାର ସମ୍ଭବ, ରାଧାନାଥଙ୍କର ମହାଯାତ୍ରା, ମିଲ୍ଟନଙ୍କର ପାରାଡାଇଜ ଲଷ୍ଟ, ଭର୍ଜିଲଙ୍କ ଏନିଡ଼ ଇତ୍ୟାଦି ଏହି ଶ୍ରେଣୀର ମହାକାବ୍ୟ ।

ବିବେଚନା କରାଯାଉଛି । ବସ୍ତୁତଃ ମହାକାବ୍ୟ-ସୃଷ୍ଟିର ଅମଳିନ ପୁରାଣ କଣ୍ଠିରେ ହିଁ ତାଙ୍କର ସାରସ୍ୱତ ସିଦ୍ଧି । ଆମ ସାହିତ୍ୟର ବିକାଶ ଧାରାରେ ସାରଳା ଦାସ ହେଉଛନ୍ତି କାବ୍ୟ ପ୍ରେରଣାର ଉତ୍ସ ଓ କଳା-ବୋଧର ଉଚ୍ଛ୍ୱାସ । ସେ, ମହାକାବ୍ୟର କବି, କିଂତୁ ତାଙ୍କର ସାରସ୍ୱତ ସଂଯୋଗରୁ କାବ୍ୟ ରଚନାର ସାଧାରଣ ଉପଜୀବ୍ୟ ପ୍ରାପ୍ତ ସଂଗୃହୀତ ।

ରାମବିଭା ଓ କଳ୍ପଲତାର କବି ଅର୍ଜୁନ ଦାସ ଆପଣା କାବ୍ୟ ଲାଗି ପୁରାଣ ଓ କାଳ୍ପନିକ ଜଗତରୁ କଥାବସ୍ତୁ ଆହରଣ କରିଛନ୍ତି । ପୁରାଣ ପ୍ରସଙ୍ଗ କିଂବା ତହିଁରୁ କୌଣସି ଗୋଟିଏ ଆଖ୍ୟାୟିକା ଅବଲମ୍ବନରେ କାବ୍ୟ ରଚନା କରିବା ମୂଳରେ କବି ମନର ଯେଉଁ ପ୍ରଯତ୍ନ ତାହା ସମ୍ଭବତଃ ପୁରାଣ-ପରଂପରାର ପ୍ରଭାବ-ପ୍ରେରିତ । କାରଣ ସେ କାଳର ପାଠକ ସମାଜ, ଯେଉଁମାନେ କି ପୁରାଣ ଓ ଅଦ୍ଭୁତକଥା ଶ୍ରବଣରେ ଅଭ୍ୟସ୍ତ, ସେମାନଙ୍କ ରୁଚିକୁ ଆମୋଦିତ କରିବା ପାଇଁ ପୌରାଣିକ କାହାଣୀର ପ୍ରୟୋଜନ ଯେ ଏକାନ୍ତ ଅନୁକୂଳ—କବି ଏଥି ପ୍ରତି ସଚେତନ ଥିଲେ । ତେଣୁ ପୁରାଣରୁ କଥାବସ୍ତୁ ତାଙ୍କ କାବ୍ୟରେ ଗ୍ରଥିତ ହେଲା । ରଚନା ରୀତି ଓ ବିଷୟ-ବିନ୍ୟାସର ଭିନ୍ନମାର୍ଗୀ ପରିକଳ୍ପନା ହେତୁ ପୁରାଣ ଠାରୁ କାବ୍ୟ ପୃଥକ ପ୍ରତୀତ ହେଲା; ନଚେତ୍ ଏହା କଥା-ବସ୍ତୁର ସାଦୃଶ୍ୟ ଘେନି ପୁରାଣ ହୋଇଯାଇ ଥାନ୍ତା !

## କାବ୍ୟ-କଥା ଓ କାବ୍ୟ-କୌଶଳ

ଅର୍ଜୁନ ଦାସଙ୍କର ରାମବିଭା କାବ୍ୟର ଯେଉଁ ସଂଯୋଜନା କୌଶଳ ଅବଲମ୍ବିତ ତାହା ପୁରାଣ ଓ କାବ୍ୟ ରୀତିର ମିଶ୍ରିତ ଅଭିବ୍ୟକ୍ତିରେ ଗଠିତ । ବକ୍ତବ୍ୟ-ଧର୍ମୀ ସଳଖ ପଦବିନ୍ୟାସ ଏବଂ

ଆଖ୍ୟାୟିକାର ସହଜ ସର୍ଳୀକରଣରୁ ପୁରାଣ ରୀତିର ଆଶ୍ରୟ ମିଳିଥାଏ । ପୁରାଣମାନଙ୍କରେ ବକ୍ତା ଓ ଶ୍ରୋତାଙ୍କ ଜରିଆରେ ଉପାଖ୍ୟାନ ସମୂହ କଥିତ ହେଲାପରି ଏହି କାବ୍ୟରେ ବକ୍ତା ମାର୍କଣ୍ଡେୟ ମୁନି ଓ ଶ୍ରୋତା ଯୁଧିଷ୍ଠିରଙ୍କୁ ଦାୟୀ କରି କାବ୍ୟ ପ୍ରସଙ୍ଗର କ୍ରମ ଉନ୍ମୋଚନ ସଂଘଟିତ ହୋଇଛି । କବି ଉଲ୍ଲେଖ କରିଛନ୍ତି;

"ମାରକଣ୍ଡ ଋଷି କହେ କଥା ପରସଙ୍ଗେ,
ପଣ୍ଡୁସୁତ ଧର୍ମ-ରାଜ ଯୁଧିଷ୍ଠିଙ୍କ ଆଗେ ହେ
ପୁଚ୍ଛେ ଯୁଧିଷ୍ଠି ରାୟେ ଯୋଡ଼ି କର,
ରାମଚରିତ କହ ମୁନିବର ।
ବୋଲେ ସାନନ୍ଦ ଚିତ୍ତେ ମାରକଣ୍ଡ,
ଶୁଣି ସକଳ ପାପ ତୋର ଖଣ୍ଡ ।
(ରାମବିଭା—୧ମ ଓ ୨ୟ ଛାନ୍ଦ )

ଏହି ଅଭିବ୍ୟକ୍ତି ହିଁ ପୁରାଣ ରୀତିର ଏକ ସ୍ପଷ୍ଟ ସଂକେତ । ଏହି କାବ୍ୟରେ ପୁରାଣ ରୀତି ଅବଲମ୍ବିତ ହୋଇଥିବାର ଅନ୍ୟ ଏକ ନିଦର୍ଶନ ହେଉଛି; ଏଥିରେ କଥାନକ ସର୍ଳୀକରଣରେ କୌଣସି ଜଟିଳତା ନାହିଁ । କ୍ରମାନ୍ୱୟରେ ଘଟଣାବଳୀ ବର୍ଣ୍ଣିତ ହୋଇଛି, କଥାର ସରଳଧାରା ଉତ୍ଥାନ ପତନର ଗତିବ୍ୟୂହ ଭିତରେ ନପଡ଼ି ସମତଳ ଭୂମିରେ ହିଁ ବହିଯାଇଛି ।

ରାମାୟଣର ଆଂଶିକରଣ ଏବଂ ଉପଯୋଗୀ ଉପାଖ୍ୟାନ କାବ୍ୟର କଥା ବସ୍ତୁରେ ଅଂଗୀଭୂତ ହୋଇଛି । ବିଶ୍ୱାମିତ୍ରଙ୍କର ଯାଗରକ୍ଷା ଲାଗି କୁମାର ରାମଚନ୍ଦ୍ରଙ୍କର ବନଯାତ୍ରା, ତାଡ଼କାବଧ, ଅହଲ୍ୟା ଶାପମୁକ୍ତି, ବାଳି, ସୁଗ୍ରୀବ, ହନୁମାନଙ୍କ ଜନ୍ମ ବୃତ୍ତାନ୍ତ, ସୀତା ପରିଣୟ, ପର୍ଶୁରାମ ଦର୍ପଦଳନ, ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଇତ୍ୟାଦି କଥାଂଶକୁ ଆଧାର କରି କାବ୍ୟଟି ପରିକଳ୍ପିତ ।

ସାରଳା ମହାଭାରତ ଏବଂ ରାମାୟଣ ହେଉଛି, 'ରାମବିଭା' କାବ୍ୟ କଥାର ସଂଗ୍ରହ ସୂତ୍ର । ସାରଳା ମହାଭାରତରୁ ବାଳୀ-ସୁଗ୍ରୀବ-ହନୁମାନ

ଜନ୍ମବୃତ୍ତାନ୍ତ ସଂଗୃହୀତ । ଅନ୍ୟାନ୍ୟ ପ୍ରସଙ୍ଗ ରାମାୟଣରୁ ଆନୀତ, ମାତ୍ର ଆବଶ୍ୟକ ସ୍ଥଳେ ପରିବର୍ତ୍ତିତ ହୋଇ କାବ୍ୟରେ ସଂଯୋଜିତ ହୋଇ-ଥିବା ଲକ୍ଷିତ ହୁଏ, ଯେପରି ଜନକଙ୍କ ଦ୍ୱାରା ଲିଖିତ ଓ ଦଶରଥଙ୍କ ଉଦ୍ଦେଶ୍ୟରେ ପ୍ରେରିତ ପତ୍ରର ସଂଯୋଜନା ଏବଂ ଦଶରଥଙ୍କର ମିଥିଳା ଯାତ୍ରାର ପ୍ରସଙ୍ଗ ଉଲ୍ଲେଖ । ଏହା ମୂଳ ରାମାୟଣଠାରୁ ଭିନ୍ନ । ପରଶୁରାମଙ୍କ ସହ ରାମଙ୍କର ସାକ୍ଷାତ ଅବସରରେ ଉକ୍ତି-ପ୍ରତ୍ୟୁକ୍ତି (ରାମବିଭା-୧୨ଶ ଛାନ୍ଦ)ର ଉଲ୍ଲେଖରେ ମଧ୍ୟ ବ୍ୟତିକ୍ରମ ଅଛି ।

ମୂଳ ରାମାୟଣଠାରୁ କାବ୍ୟାନ୍ତର୍ଗତ ବିଷୟବସ୍ତୁରେ ଦେଖା-ଦେଇଥିବା ବ୍ୟତିକ୍ରମର କାରଣ ସମ୍ଭବତଃ ଏହାଯେ,-କାବ୍ୟଟି ରାମାୟଣର ଆଦିକାଣ୍ଡର କାହାଣୀକୁ ନେଇ ଗଠିତ । ରାମଚନ୍ଦ୍ରଙ୍କର ଧରାବତରଣ, ସୀତା-ବିବାହ, ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପ୍ରଭୃତି ଘଟଣା ରାମାୟଣରେ ହେଲେବି ଏହା ଅବିକଳ 'ରାମବିଭା' କାବ୍ୟରେ ସଂଯୁକ୍ତ ହୋଇ ନାହିଁ । ଉପଯୋଗିତା ଓ କଳା-ବୋଧର ଅନୁରୋଧରେ ସମ୍ଭବତଃ କବି ଅର୍ଜୁନ ଦାସ ସ୍ଥାନେ ସ୍ଥାନେ ବିଷୟବସ୍ତୁରେ ପରି-ବର୍ତ୍ତନ ଆଣିଛନ୍ତି । ପ୍ରସଙ୍ଗ ବର୍ଣ୍ଣନାରେ ବ୍ୟାପ୍ତି ନ ଘଟାଇ ତାହାକୁ ସଂକ୍ଷିପ୍ତ ଓ ସୁସମ୍ବଦ୍ଧ କରି ପ୍ରକାଶ କରିଛନ୍ତି, ଯେପରି ହୋଇଛି— ରାମଚନ୍ଦ୍ରଙ୍କର ଅବତାର ଗ୍ରହଣ ଓ ଜନ୍ମ ବୃତ୍ତାନ୍ତର ବର୍ଣ୍ଣନା ମାତ୍ର ତିନୋଟି ପଦରେ (ରାମବିଭା-୧ମ ଛାନ୍ଦ) । ଯଥା—

ଅବନୀ ଛନ୍ଦେଣ ଜଗନ୍ନାଥ ହୋଏ ଜାତ
ଦଶରଥ ନୃପତିର ହୋଏ ଗୃହପୁତ୍ର ହେ ।
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ଚାରି
ଏକ ଆତ୍ମା ଚାରିରୂପେ ହୋଏ ଅବତାର ହେ ।
ଚାରିଭାଇ ନାନା କଉତୁକେ ନ୍ୟନ୍ତି ଦିନ
ଉପଟେତ କଲେ ସବୁ ଶସ୍ତ୍ର ଶାସ୍ତ୍ର ମାତ ହେ ।

ବାଲୀ, ସୁଗ୍ରୀବ ଓ ହନୁମାନଙ୍କର ଜନ୍ମକାହାଣୀ କଥନ ପାଇଁ ସାତଟି। ମହାଭାରତର ବନ ପର୍ବରେ ଦୁଇଶହ ଷାଠିଏଟି ପଦ ପ୍ରୟୋଜନ ହୋଇଥିବା ସ୍ଥଳେ ଅର୍ଜ୍ଜୁନ ଦାସ ଏହାକୁ ମାତ୍ର ଷୋଳଟି ପଦରେ ଶେଷ କରିଛନ୍ତି (ରାମ ବିଭା-୫ମ ଛାନ୍ଦ : ୪୦-୫୬ପଦ; ୬ଷ୍ଠ ଛାନ୍ଦ : ୧୩-୩୬ ପଦ)। ସେହିପରି ରାମଚନ୍ଦ୍ରଙ୍କର ମିଥିଳା ପ୍ରବେଶ ଦୃଶ୍ୟକୁ କବି ମାତ୍ର ଆଠଟି ପଦରେ (ଷଷ୍ଠ ଛାନ୍ଦ : ୫୬—୬୩ପଦ) ପ୍ରକାଶ କରି ପାରିଛନ୍ତି।

ବର୍ଣ୍ଣନାରେ ଆନୁପାତିକ ସଂକ୍ଷିପ୍ତି ହେତୁ ଏହା ପୁରାଣ-କଳାକୁ ପରିହାର କରିଛି, କାବ୍ୟ-ରସର ପରିପୁଷ୍ଟି ପାଇଁ ଘଟଣା ବା ଦୃଶ୍ୟ ବିନ୍ୟାସରେ ସୌନ୍ଦର୍ଯ୍ୟ ସୃଷ୍ଟି ପ୍ରତି କବି ଧ୍ୟାନ ଦେଇଛନ୍ତି। ରାମ, ଲକ୍ଷ୍ମଣ, ସୀତା ପ୍ରଭୃତିଙ୍କର ଶୋଭା ବର୍ଣ୍ଣନା, ଅରଣ୍ୟ ବା ମହାବନ ବର୍ଣ୍ଣନା (୩ଯୁ, ୪ର୍ଥ ଛାନ୍ଦ), ପ୍ରଭାତ ବର୍ଣ୍ଣନା, ବାସର ବେଶ ବର୍ଣ୍ଣନା ( ୧୧ଶ ଛାନ୍ଦ) ପ୍ରଭୃତିରୁ ସୌନ୍ଦର୍ଯ୍ୟ ସଚେତନ କବି ମନର ସୂଚନା ମିଳିଥାଏ।

## ଅଭିବ୍ୟକ୍ତିର ଧାରା : କାବ୍ୟବନ୍ଧ

ସାରସ୍ୱତ କ୍ଷେତ୍ରରେ ସୌନ୍ଦର୍ଯ୍ୟର ଅନୁଭବ ଜଣାପଡ଼େ ସେତିକିବେଳେ, ଯେତେବେଳେ କୌଣସି ବସ୍ତୁ ବା ବର୍ଣ୍ଣନାର ଅଂଶ ଆମ ମନରେ ଭାବାବେଗ ଜାଗରଣରେ ସାହାଯ୍ୟ କରେ, ଆମକୁ ଆବେଗ ତନ୍ମୟ କରି ସୁରୁଚି ପୋଷଣରେ ସହାୟକ ହୁଏ। ଯେଉଁ ବସ୍ତୁର ରୂପ ମଧ୍ୟରେ ଏପରି ବିଶେଷ ଆବେଗ ବା ଆନନ୍ଦ ଜାଗରଣର କ୍ଷମତା ଥାଏ, ତାହାକୁ ସୁନ୍ଦର କୁହାଯାଏ। ବସ୍ତୁତଃ ସୌନ୍ଦର୍ଯ୍ୟ

ହେଉଛି ଆନନ୍ଦବୋଧର ସାକାରମୂର୍ତ୍ତି, ବା ମୂର୍ତ୍ତିମାନ ଆନନ୍ଦ । ସାହିତ୍ୟର ଯେଉଁ ଅଭିବ୍ୟକ୍ତି, ସହୃଦୟର ମନକୁ ଏପରି ଏକ ଆନନ୍ଦମଗ୍ନ ଅବସ୍ଥାକୁ ନେଇଯାଏ, ତହିଁରେ ଥାଏ ସୌନ୍ଦର୍ଯ୍ୟର ଦ୍ୟୋତନା ।

ଏ ଦୃଷ୍ଟିରୁ ବିଚାରିଲେ, କବି ଅର୍ଜ୍ଜୁନ ଦାସଙ୍କର ବାକ୍ୟ-ଛନ୍ଦର ସ୍ଥଳେ ସ୍ଥଳେ ବର୍ଣ୍ଣନାର ବିଳାସ ଅପେକ୍ଷା ଅଭିବ୍ୟକ୍ତିର ପରିମିତ ପ୍ରକାଶ ଲକ୍ଷିତ ହୋଇଥାଏ; ଯାହାକି କାବ୍ୟିକ ସୌନ୍ଦର୍ଯ୍ୟ ସଂରକ୍ଷଣରେ ଏକାନ୍ତ ସହାୟକ ବୋଲି କାବ୍ୟପ୍ରେମୀଙ୍କର ଧାରଣା ହୁଏ । ତାଡ଼କା ବଧ ପ୍ରସଙ୍ଗରେ କବିଙ୍କର ବର୍ଣ୍ଣନା ଏହି ଗୁଣରେ ପୂର୍ଣ୍ଣ । ରାମବାଣ, ନିଶାଚରୀ ତାଡ଼କାର ଜୀବନ ନେଇ ପୁଣି ତୂଣୀରକୁ ଫେରି ଆସିଛି—ଏହାକୁ କବି ଏକ କାବ୍ୟିକ ବକ୍ତବ୍ୟ ଜରିଆରେ ପ୍ରକାଶ କରିଛନ୍ତି, ଯେପରି—

କୁଟିଳ କଠୋର ହୃଦୟ ତାର ରାମବାଣ ପଡ଼ି
ମର୍ତ୍ତ୍ୟଲୋଭେ ଯେହ୍ନେ ଗଂଗାଇ ତେସନ ଜଳରେ ବୁଡ଼ି
ସେତୁ ଯେମନ୍ତ ମୀନ ନେଇ ଯାଇ ଡାଳରେ ବସେ
ତାଡ଼କା ଜୀବନ ନେଇଣ ବାଣ ରାମ ତୂଣୀରେ ପଶେ
(ରାମ ବିଭା— ୪ର୍ଥ ଛାନ୍ଦ ୩୬/୩୭ ପଦ) ।

ଉପମା ଶକ୍ତି ହିଁ ଏହି ଅଭିବ୍ୟକ୍ତିଟିକୁ ସୁନ୍ଦର ଓ ଶ୍ରୁତି ମଧୁର କରି ପାରିଛି । ସରସ୍ୱତୀ ନଦୀ ତୀରରେ ସୀମନ୍ତନୀଗଣଙ୍କର ରାମ ଦର୍ଶନ ଅବକାଶରେ ଯେଉଁ ବର୍ଣ୍ଣନା ଛବିଟି ପରିବେଶିତ ହୋଇଛି, ତହିଁରେ ଅଭିବ୍ୟକ୍ତିର ସୌନ୍ଦର୍ଯ୍ୟ ନିହିତ—

ଯୁବାସୀମନ୍ତନୀ କୁମ୍ଭ ନେଇ ସରସ୍ୱତୀ ତୀରେ
ରାମ ବଦନ ଦର୍ଶନେ କାତର ପୁଲକ ସ୍ୱରେ ।

ଏକକୁ ଆନେକ ବୋଲନ୍ତି ଦେଖ ଦେଖ ଓଗୋ ସଖି !
ଏ' ଟି ଅବନୀ ଅଳଂକାର ସଫଳ କର ଆଖି । ୪
କେବଣ ପୁଣ୍ୟ ସୃଷ୍ଟି କୋଳେ ଜାତ କୁମର ବେନି
ଯେହ୍ନେ ବେଦ୍ଧାବର ସଙ୍ଗତେ ଶିବ କେଶବ ଯେନି । ୫
ଦୂର୍ବାଦଳ ନୀଳ କୋମଳ ମଝ୍ୟା ସିଂହର ଠାଣି
ନଯୂନ କୁସୁମ ସାଯୁକ ମଧୁର ପିକବାଣୀ । ୬
ସାଗରେ ଶଶୀ ଶତେବାର ଯେଝୁ ଝାସିବ ଜଳେ
କେ ଅବା ପୁଣ୍ୟ କଲୁ ତାରେ ଯେବା ଧଣବ କୋଳେ । ୭
ରାମ ଅଦୃଶ୍ୟ ହେବାଯାଏଁ ବାମା ଚକ୍ଷୁଁଣ ଥିଲେ
ମନକୁ ସଙ୍ଗେ ପଠିଆଇ ସେ ଯାହା ପୁରେ ଗଲେ । ୮

( ରାମବିଭା—୩ୟ ଛାନ୍ଦ : ପଦ ୩-୮, ପ୍ରାଚୀ ସଂସ୍କରଣ )

ସରଳ ଶବ୍ଦ ବିନ୍ୟାସ ଓ କାହାଣୀଧର୍ମୀ ବକ୍ତବ୍ୟ ସତ୍ତ୍ୱେ ଏହି ପଙ୍କ୍ତିଗୁଡ଼ିକ ଉପମାର ଗୁଣ ଧ୍ୱନି ଶକ୍ତି ଅନୁମତେ ସୌନ୍ଦର୍ଯ୍ୟ ବୋଧକ ହୋଇ ପାରିଛନ୍ତି; ସେହିପରି ବାସରସଜ୍ଜା ବର୍ଣ୍ଣନା ଅବସରରେ, କବି ଅର୍ଜୁନ ଦାସଙ୍କର ପ୍ରକାଶଭଙ୍ଗୀ ଇନ୍ଦ୍ରିୟ-ବିହ୍ୱଳଭାବାବସ୍ଥା ସଂଚ୍ଚର ନ କରି ମନ୍ଦ ଉଲ୍ଲାସ ଉଦ୍ରେକର କାରଣ ହୋଇଛି । ରାମ-ସୀତାଙ୍କର ମଧୁମିଳନକୁ (୧୧ଶ ଛାନ୍ଦ) ଔଚିତ୍ୟର ଶାଳୀନତା ଭିତରେ ପ୍ରକାଶ କରାଯାଇଛି । ଏହା ଶୃଙ୍ଗାରିକ ଉଷ୍ମତାର ଆଧିକ୍ୟରେ କିମ୍ବା ସଂକୋଚମୁକ୍ତ ପଦ-ବିନ୍ୟାସରେ ଭାରାକ୍ରାନ୍ତ ହୋଇନାହିଁ । ଉପମା ଏବଂ ଅନ୍ୟ କେତୋଟି ଅଳଂକାରର ବିପୁଳ ପ୍ରୟୋଗ ହେତୁ କବି କାବ୍ୟଟିକୁ ଯଥା ସମ୍ଭବ ସୌନ୍ଦର୍ଯ୍ୟମଣ୍ଡିତ କରି ପାରିଛନ୍ତି । କୁହାଯାଏ ଯେ, କବି

ଅର୍ଜୁନ ଦାସ ଏହି କାବ୍ୟରେ ସର୍ବମୋଟ ବାଇଶି ଗୋଟି ଉପମା, ବାରଗୋଟି ରୂପକ, ତିରିଶି ଟି ଉତ୍‌ପ୍ରେକ୍ଷା, ଗୋଟିଏ ଲେଖାଁ ବ୍ୟତିରେକ, ବିଭାବନା, ଉଲ୍ଲେଖ ଏବଂ ବକ୍ରୋକ୍ତି ଅଳଂକାର ପ୍ରୟୋଗ କରିଛନ୍ତି । *

ଅଳଂକାର ପ୍ରୟୋଗ ବ୍ୟାପାରରେ ପ୍ରସଙ୍ଗ ନିରପେକ୍ଷ ରୂପ ସୃଷ୍ଟିର କାରୁ କରଣି ଉପରେ କବି ବିଶେଷ ଧ୍ୟାନ ଦେଇ ନାହାଁନ୍ତି । ଗଳ୍ପର ସ୍ୱଭାବ ଗତିକୁ ସୁନ୍ଦର କରି ତୋଳିବା ପାଇଁ ସ୍ଥାନେ ସ୍ଥାନେ ଅଳଂକାର ବ୍ୟବହାର କରିଛନ୍ତି ମାତ୍ର । ତେଣୁ ଏହି କାବ୍ୟରେ ବ୍ୟବହୃତ ବିବିଧ ଉପମା କିଂବା ଅଳଂକାର ପ୍ରଭୃତିର ନିଜସ୍ୱ ରୂପ ସୌଷ୍ଠବ ସେପରି ଉଜ୍ଜ୍ୱଳ ନୁହେଁ । ଏମାନଙ୍କର ପ୍ରାପ୍ତି ନିହାତି ସାଧାରଣ । ବିମ୍ବ-କଳ୍ପନାରେ ରୂପ ଦୃଷ୍ଟିର ବିନିଯୋଗ ବେଶି ଘଟିଥିବାରୁ ଭାବ-କଳ୍ପର ଅଂକନ ପରିପାଟୀ ପ୍ରତି କବି ଜୋର ଦେଇ ନାହାନ୍ତି । କବିଙ୍କର ଉପମା-ଜଗତରୁ ଏହାର ପ୍ରମାଣ ଅନୁସନ୍ଧାନ କରା ଯାଇପାରେ । କବି ଯଦି ଉଲ୍ଲେଖ କରନ୍ତି ଯେ,

'ସାପର ଅନଳ ଯେହ୍ନେ ସାପରେଣ ଥାଇ ।
ସମିଧ ପାଇଲେ ଧ୍ରୁବ ଲୋକ ଖାଏ ଯାଇ ହେ ।
ବାହାର ହୋଇଲେ ରାମ, ପ୍ରତାପ ବଳିବ
ଦନୁଜ ସାଗର ରାମ ସାୟୁକେ ଶୋଷିବ ହେ ।

(ରାମ ବିଭା—୧ମ ଛାନ୍ଦ) ।

---

* ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ—ସ୍ରଷ୍ଟା ଓ ସୃଷ୍ଟି ( ୧୯୭୨ )—ରାମବିଭା : ଏକ ଅଧ୍ୟୟନ—ପୃଷ୍ଠା ୪୭, ବ୍ରହ୍ମପୁର ।

ଏଥିରୁ ରୂପାତ୍ମକ କାବ୍ୟ-ବିମ୍ବର ଆଭାସ ଯେପରି ମିଳୁଛି, ଭାବାତ୍ମକ ଆଲେଖ୍ୟ ସେପରି ମିଳୁନାହିଁ । ମନେ ହେଉଛି, କବି ଆପଣାର କବ୍ୟରେ ଭାବାତ୍ମକ କାବ୍ୟ-ବିମ୍ବ ( Image of thought ) ଅପେକ୍ଷା ରୂପାତ୍ମକ କାବ୍ୟ-ବିମ୍ବ ( Image of Impression ) ସୃଷ୍ଟିରେ ସକଳଶକ୍ତି ବିନିଯୋଗ କରିଛନ୍ତି । ଏଥିପାଇଁ ସେ ପାରଂପରିକ କବି-କୌଶଳର ଅନୁବର୍ତ୍ତୀ ହୋଇଛନ୍ତି । ଉପମାନ ଉପମେୟ ନିର୍ବାଚନରେ ବସ୍ତୁ ବା ସାଧାରଣ ଜଗତ ଉପରେ ନିର୍ଭର କରିଛନ୍ତି; ଶବ୍ଦ ସଜ୍ଜାରେ ବୈଚିତ୍ର୍ୟ ବିନ୍ୟାସ ଘଟିନାହିଁ କହିଲେ ଚଳେ । ଏଣୁ କୁହାଯାଇ ପାରେ ଯେ, କବି ଅର୍ଜ୍ଜୁନ ଦାସଙ୍କର କାବ୍ୟକୃତିର ମାନ କଳାତ୍ମକ ବିଭବ ଦେଇ ରୁଚି ଧ୍ୱସ୍ତ ହୋଇ ନଥିଲେ ବି ବିଷୟ-ସର୍ଜ୍ଜାର ସଂହତ ପ୍ରକାଶ ଯୋଗୁଁ ଉପଭୋଗ୍ୟ ହୋଇପାରିଛି ।

କବିଙ୍କର ଅନ୍ୟତମ କାବ୍ୟ କଳ୍ପଲତାରେ ଅଭିବ୍ୟକ୍ତିର ଧାରା ଅଭ୍ୟସ୍ତ କବି-କୌଶଳର ଅନୁଗାମୀ ହୋଇଛି । ସଂସ୍କୃତ କାବ୍ୟ-କଳାର ବିଶ୍ଳିଷ୍ଟ ଅନୁସରଣରେ ଏହା ଗଠିତ ହୋଇନାହିଁ କହିଲେ ଚଳେ । କାରଣ ଏତେବେଳକୁ ଓଡ଼ିଆ କାବ୍ୟ-ଭିତ୍ତିରେ ସଂସ୍କୃତ ପ୍ରଭାବ, ବିଶେଷ ପ୍ରବେଶ କରି ନଥିଲା । ତେଣୁ ସାରଳା-ସାହିତ୍ୟର ନିରାଡ଼ମ୍ବର ଅଭିବ୍ୟକ୍ତିକୁ ଏହା ସମ୍ଭବତଃ ଆଦରି ନେଇଥିଲା । ଏହି କାବ୍ୟର ଗୌରବ ବସ୍ତୁତଃ ଏହାର ନିରାଡ଼ମ୍ବର ଅଭିବ୍ୟକ୍ତିକୁ ନେଇ । ଆଲୋଚ୍ୟ କାବ୍ୟ ସଂପର୍କରେ କୁହାଯାଏ ଯେ, "ପ୍ରଥମ ଛନ୍ଦୋବଦ୍ଧ କାବ୍ୟ ରୂପେ ରାମ ବିଭା ଯେପରି ସ୍ମରଣୀୟ, ସଂସ୍କୃତ ପ୍ରଭାବ ମୁକ୍ତ ପ୍ରଥମ ଓଡ଼ିଆ କାଳ୍ପନିକ କାବ୍ୟ ରୂପେ

କଲ୍ପଲତା ସେହିପରି ବିଶେଷତ୍ୱସଂପନ୍ନ । ମାତ୍ର ଏଥିରେ ଋତୁ, ଉଦ୍ୟାନ ଓ ନାୟିକାର ଅଙ୍ଗ ବର୍ଣ୍ଣନା ପ୍ରଭୃତି ମଧ୍ୟଯୁଗୀୟ କାବ୍ୟ ଶୈଳୀ ପରିଲକ୍ଷିତ ହୁଏ ନାହିଁ । ଏହାର ଶୈଳୀ ନିରାଡମ୍ବର ହେଲେ ହେଁ ଏଥିରେ ଉପମା, ଉପମେୟ ଓ ଯମକ ପ୍ରଭୃତି ରୀତିଗତ ବିନ୍ୟାସର କ୍ଷୀଣ ଅନୁଶୀଳନ ପରିଲକ୍ଷିତ ହୁଏ ।"*

କବିପ୍ରସିଦ୍ଧି ଅନୁମତେ କବି ଏଥିରେ କାବ୍ୟ-ବିମ୍ବର ପ୍ରୟୋଗ କରିଛନ୍ତି । ନାୟକ-ନାୟିକା କମ୍ୱା ପରିପାର୍ଶ୍ୱର ଶୋଭାବର୍ଣ୍ଣନା ସମୟରେ ଚଳି ଆସୁଥିବା ଶବ୍ଦ ସଜ୍ଜାକୁ କବି ଗ୍ରହଣ କରିଛନ୍ତି । ବଦନକୁ ପୂର୍ଣ୍ଣିମା ଶଶଧର, ଭ୍ରୂଲତାକୁ ମଧୁପ ପଙ୍‌କ୍ତି, ଅଧରକୁ ବନ୍ଧୁଳି ଫୁଲ, ଦନ୍ତ ପଙ୍‌କ୍ତିକୁ କୌମୁଦୀ, ନିତମ୍ବକୁ ମଦନ-ସିଂହାସନ, ଚରଣକୁ ସ୍ଥଳକମଳ ଇତ୍ୟାଦି ସହିତ ତୁଳ୍ୟତା ଦିଆ-ଯାଇଛି । କଲ୍ପଲତାର ବହିଃବେଶ ବର୍ଣ୍ଣନାରେ ଏପରି ଆଳଙ୍କାରିକ ଦୃଷ୍ଟାନ୍ତ ବିଦ୍ୟମାନ । ଉପମା, ଉତ୍‌ପ୍ରେକ୍ଷା ଆଦି ଅଳଙ୍କାର ଜରିଆରେ କାବ୍ୟକ ଅଭିବ୍ୟକ୍ତିର ସ୍ୱାଭାବିକତା ଆଣିବାକୁ କବି ଯତ୍ନ କରିଛନ୍ତି, ଯେପରି—

'ତିଳଫୁଲ ନାସାରେ ଲୁଳଇ ଗଜମୋତି,
ସୁଧାକର ଉଦରେ କି ସୁରଙ୍ଗର ଜ୍ୟୋତି ହେ ।
କପୋଳେ କସ୍ତୁରୀ ଚିତା ମନୋହର ଦିଶି,
ରାହୁ ଗରାସଇ ଯେହ୍ନେ ପଉର୍ଣ୍ଣମୀ ଶଶୀ ହେ ।' †

---

* ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ମଧ୍ୟପର୍ବ (୧୯୬୭) ପୃଷ୍ଠା-୮୧ କଟକ ।

† ଅର୍ଜୁନ ଦାସ—କଲ୍ପଲତା; କେଦାରନାଥ ମହାପାତ୍ର ସଂପାଦିତ—୧ମ ଖଣ୍ଡ, ୪୭-୪୮ ପଦ ।

ସ୍ଥଳ ବିଶେଷରେ ବର୍ଣ୍ଣନାରେ କାଳ୍ପନିକତାର ଅତ୍ୟୁକ୍ତି ପରି-ଲକ୍ଷିତ ହୋଇଛି; ଯଥା—

'ଗନ୍ଧଳ ଧନ୍ଦୋଳ ନୃପ ସଦନ
ଚନ୍ଦନେ ମେଦିନୀ କର୍ଦ୍ଦମ'
(କଳ୍ପଲତା-୧୦ମ ଛାନ୍ଦ-୧୭ ପଦ) ।

ବିବାହ ଲଗ୍ନରେ ରାଜ ଉଆସରେ ଜନ ସମାଗମ ଓ ବିଳାସର ଉପଚାର ଏତେ ବଢ଼ି ଯାଇଛି ଯେ ଚନ୍ଦନ ଛିଟାରେ ପୃଥ୍ୱୀ କାଦୁଅ ପାଲଟି ଯାଇଛି । ଏହା ଅତିରଂଜନର ଏକ ନମୁନା ନୁହେଁ କି ?

ସରଳ କଥ୍ୟଭଂଗୀରେ ପଙ୍‌କ୍ତି ସଂଯୋଜନା କରି କବି ମଧ୍ୟ ସ୍ଥାନେ ସ୍ଥାନେ ସୌନ୍ଦର୍ଯ୍ୟ ସୃଷ୍ଟି ଲାଗି ଉଦ୍ୟମ କରିଛନ୍ତି, ଯେପରି—

'ବର ବରଣ ହୋଇଅଛି ବସି
କନ୍ୟା ଅନ୍ଦଳେ ଯାଉଅଛି ପଶି'
(କଳ୍ପଲତା-୬ଷ୍ଠ ଛାନ୍ଦ, ୮୭ ପଦ)

ଏବଂ

'ସାନନ୍ଦେ କୁମର ମୁଖ ପ୍ରସନ୍ନ
ଦିବସେ ଯେହ୍ନେ କମଳ ବନ'
(କଳ୍ପଲତା-୧୦ମ ଛାନ୍ଦ, ୧୮ ପଦ) ।

ଏହି ପଦଗୁଡ଼ିକ ବକ୍ତବ୍ୟଧର୍ମୀ ଓ ସିଧାସଳଖ ହୋଇଥିଲେ ମଧ୍ୟ ଶବ୍ଦ ଶକ୍ତି ବଳରେ ଶ୍ରୁତି-ମଧୁର ଓ ସ୍ୱାଭାବିକ ଶୋଭାବ୍ୟଞ୍ଜକ ହୋଇପାରିଛି ।

କାବ୍ୟରେ ଶୃଙ୍ଗାରିକ ଚିତ୍ର ଅଂକନ କଲାବେଳେ କବି, ପରଂପରାଗତ କଳ୍ପିତ ଅନୁବର୍ତ୍ତୀ ହୋଇଛନ୍ତି ସତ, କିନ୍ତୁ କାବ୍ୟ-ନାୟିକା

ଓ କୌଣସି ନାରୀ ମୂର୍ତ୍ତିର ଶୋଭା ବର୍ଣ୍ଣନାରେ ଅଥବା ରତିକ୍ରୀଡ଼ାର ପ୍ରସଙ୍ଗ ଉଲ୍ଲେଖରେ ସଂକ୍ଷିପ୍ତି ଓ ସଂଯମ ରକ୍ଷା କରିଛନ୍ତି । ପରିମିତ ଅଭିବ୍ୟକ୍ତି ଯୋଗୁଁ କାବ୍ୟରେ ଆଦିରସାତ୍ମକ ଆବେଗର ଉଚ୍ଛୃଙ୍ଖଳ ପ୍ରବାହ ସୃଷ୍ଟି ହୋଇନାହିଁ । କଳ୍ପଲତାର ବଧୂବେଶ ବର୍ଣ୍ଣନା କିଂବା ମଧୁ ବାସର ଲୀଳାରେ ଏପରି ବର୍ଣ୍ଣନାର ଦୃଷ୍ଟାନ୍ତ ନାହିଁତ; ଯଥା—

'ସୁଗନ୍ଧେ ବନ୍ଧୁଧ ଫୁଲେ କବରୀ ଖୋସିଲେ
ଜଗ ଜଣି କାମଶର ଶରଣ ପଶିଲେ ହେ ।
ମଣ୍ଡିଲେ ମୁକୁତା ଜାଲ କବରୀ କି ବେଢି
ବଦନ ଚନ୍ଦ୍ରକୁ କି ସେ ତାରକା ବେଢ଼ିଲେ ।
ମୁକୁତା ସୀମନ୍ତି ରେଖା ମଣିମୟ ରାଗ
ଅଧର ପାଇଲି ବନ୍ଧୁଜୀଲେ ଶୋଭା ନାଗ ହେ ।
ସତ୍ୟଯୁଗ ତାହାଙ୍କ ତପନ ଦରସ
ମୁନିଜନ ମନ ମୃଗ ପାଶ୍ୱରେ ପାଶ ହେ ।
(କଳ୍ପଲତା-ନବମ ଛାନ୍ଦ : ୪୩-୪୬ ପଦ)

ଏବଂ

'ବନ୍ଧୁଧ ବକାର ସୁରତ ରଙ୍ଗ
ବେନି ଶରୀର ହୋଇଲେ ଏକ ସଙ୍ଗ ।
କ୍ଷଣ କ୍ଷଣକେ ଆନୁ ଆନ ରସ
ଉଜାଗରେ ହୋଇଲେ ରଜନୀ ଶେଷ ।
ନେପୁର କଙ୍କଣ କର ଚରଣ ଦୋଳେ
ମଙ୍ଗଳ ଶବଦ ଶୁଭଇ ବୋଲେ ।
ଅଧର୍ଯ୍ୟ ହୋଇଲେ ଦୁହିଁଙ୍କର ହେଳା
ସମ୍ଭବି ଚଉଷଠୀ ରତି କଳା ।

ବେନି ସଂଗ୍ରାମ ଖଟରେ ଜିନି
ଶୃଙ୍ଗାର ରସେ ଯେ ଗଳିଲେ ବୁଡ଼ି ।
(କଳ୍ପଲତା—୧୦ମ ଛାନ୍ଦ : ୩୪–୩୭ ପଦ) ।

ପରବର୍ତ୍ତୀ କାଳର ଅନ୍ୟାନ୍ୟ ଶାସ୍ତ୍ରଧର୍ମୀ-କବିମାନଙ୍କ ପରି ଏହି କାବ୍ୟରେ ରତି ବିଳାସର ସଂମ୍ଭୋଗ-ପ୍ରକାଶ ଘଟି ନାହିଁ । କବି ଅର୍ଜୁନ ଦାସ ମଧ୍ୟ ସୌନ୍ଦର୍ଯ୍ୟ ମୂର୍ତ୍ତି ଉଦ୍ଭାବନରେ ଶୃଙ୍ଗାରିକ ଆବେଗରେ ଉଚ୍ଛଳ ବର୍ଣ୍ଣନାରେ ନାୟକ-ନାୟିକାଙ୍କୁ ଉପସ୍ଥିତ କରାଇ ନାହାନ୍ତି । ଏପରିକି ଆନତଯୌବନା କାବ୍ୟ-ନାୟିକାର ନଖଶିଖ ବର୍ଣ୍ଣନା, ରତି ଉନ୍ମାଦ ଅବସ୍ଥାର ଧର୍ଷକ ଲକ୍ଷଣିକ ପ୍ରକାଶ କିମ୍ବା ବିରହ ଜ୍ୱାଳାର ଆକୃତି ପ୍ରଭୃତି ବର୍ଣ୍ଣନେ ସେ ଆପଣା କବିଶକ୍ତିକୁ ନିଃଶେଷ କରିନାହାନ୍ତି । ମୋଟ ଉପରେ କବି ଅର୍ଜୁନ ଦାସ, ଆପଣା କାବ୍ୟ-ଭୂମିରେ ତଥାକଥିତ ମନୋରମ ପ୍ରବନ୍ଧମାନତା ଲାଗି ଯେତିକି ନିଷ୍ଠା ପ୍ରକାଶ କରିଛନ୍ତି; ଶୃଙ୍ଗାରିକ ବର୍ଣ୍ଣନା ବିଳାସ ପ୍ରତି ସେତେ ତତ୍ପର ହୋଇନାହାନ୍ତି । ଏହାର କାରଣ ହୋଇପାରେ; ଅର୍ଜୁନ ଦାସଙ୍କ ସମୟକୁ ଆମର କବି ଚେତନାରେ ଶୃଙ୍ଗାରିକ କାବ୍ୟ-କୃତିର ପ୍ରତିଷ୍ଠା ହୋଇ ନ ଥିଲା କିମ୍ବା ଉପେନ୍ଦ୍ର ଭଞ୍ଜଙ୍କ ଉକ୍ତି ଭଳି 'ନବରସରେ ସାର ଆଦ୍ୟ ବୋଲି ଶୃଙ୍ଗାର' ବୋଲି କବି-ଧର୍ମର ଇସ୍ତାହାରକୁ ସୃଷ୍ଟି ପ୍ରକ୍ରିୟାର ପ୍ରତ୍ୟେକ ସ୍ତରରେ ପାଳନ କରାଯାଉ ନ ଥିଲା । ଶାରୀରିକ ସୌନ୍ଦର୍ଯ୍ୟ କଥନରେ କବି-ମନ ଏକାନ୍ତ ଭାବେ ମଗ୍ନ ରହୁ ନ ଥିଲା; ଦେହର ବର୍ଣ୍ଣନାକୁ ଶ୍ରେଷ୍ଠ ବିଭୂତି ଦୃଷ୍ଟିରେ କେବଳ ବିଳାସ ନ ଥିଲା । ଏହା ଥିଲା କାବ୍ୟର ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ଅନ୍ୟତମ, କିନ୍ତୁ ପ୍ରଧାନ ପ୍ରସଙ୍ଗ ବା ଉପଜୀବ୍ୟ ନୁହେଁ । ଅର୍ଜୁନ ଦାସଙ୍କ ଉତ୍ତରକାଳରୁ ଏହା କାବ୍ୟ-ବୋଧ ସ୍ୱଭାବରେ

ମାନ୍ୟତା ପାଇଲା, ଦେହ ସଂଭୋଗର ବର୍ଣ୍ଣନା କବି କଳାପରେ ପରିଣତ ହେଲା । ଏ' କାଳର ପ୍ରାୟ ସବୁ କବିଙ୍କ ଲେଖାରେ ଏହାର ଦୃଷ୍ଟାନ୍ତ ଭୂରି-ଅଧିକେ ମିଳିବ । କବି ଧନଞ୍ଜୟ ଭଂଜଙ୍କର ଏକ କାବ୍ୟ ଛନ୍ଦକୁ ପ୍ରଣିଧାନ କରାଯାଉ—

'ପୁରୁଷ ପ୍ରାୟ ହୋଇଣ ରମାମଣି କରନ୍ତେ ବିପରୀତ ରତି
କଟୀ କିଙ୍କିଣୀ ହେଲା ମୁଖରିତ
ପୟୋଧର ବେନି କଞ୍ଚିତ କମ୍ପିତ ଦେଖି ହାରିଲେକ ଚିତ୍ତ ସେ
କୁମର ଦିଅ ଉପରେ ଦେଲା ବେନି କର ।
ଭଙ୍ଗି ପଢ଼ିଲା କିବା ହେ ଭୂଧର
ରତି ରଣେ କାମ ହାରିଲା ବୋଲି କି ଭଣ୍ଡାର କରେ ତା ଜୁର ।

—(ଅନଙ୍ଗରେଖା-୧୨ଶ ଛାନ୍ଦ) ।

ଏହା ଦେହଭୋଗୀ ଲାଳସା ପରିପ୍ରକାଶର ଏକ ନମୁନା । ଏପରି ରତିବିଳାସବ୍ୟଞ୍ଜକ ଉଦାହରଣ ଅର୍ଜୁନ ଦାସଙ୍କ କୃତିରୁ ମିଳିବା କଷ୍ଟ । ତଥାପି ସେ ଯେ ଦେହଜ ଆକର୍ଷଣର ନିଦର୍ଶନ କରୁ ତାଙ୍କ କାବ୍ୟରେ ଛାଡ଼ି ଯାଇନାହାନ୍ତି ତାହା ନୁହେଁ; କିଂତୁ ସେଗୁଡ଼ିକର ଆବେଦନ ଶିଥିଳ, ତାହା ଉଷ୍ମ ସ୍ନାୟୁବିକ ଶୀତ୍କାର ସଂଘଟକ ନୁହେଁ । କାବ୍ୟର ଯେଉଁ ସ୍ଥଳରେ କବି ଶୃଙ୍ଗାରିକ ଅଭିବ୍ୟକ୍ତିର ଆବୃତ ଅଭିଳାପି ସବୁ ସାଇତି ଯାଇଛନ୍ତି, ତାହା ମନର ସୂକ୍ଷ୍ମ ସୌନ୍ଦର୍ଯ୍ୟକୁ ଆବିଷ୍କାର କରିବା ଲାଗି ଯତ୍ନ କରି ନ ଥିଲେ ମଧ୍ୟ ରୁଚିହାନିର କାରଣ ହୋଇନାହିଁ ।

ସ୍ଥୂଳ ଦେହର ଶୋଭା ବର୍ଣ୍ଣନା ଲାଗି କବି ଏକାଧିକ ଅବସର ସୃଷ୍ଟି କରି ନାହାନ୍ତି କିଂବା ବାରଂବାର ସେଇ ପ୍ରସଙ୍ଗର ଅବତାରଣା

ଲାଗି ତତ୍ପରତା ଦେଖାଇ ନାହାନ୍ତି । ଦେହର ଶୋଭା ବର୍ଣ୍ଣନା ପାଇଁ କ୍ଷୀଣ ଅଭିପ୍ରାୟ ଭଞ୍ଜଙ୍କ ଠାରୁ ସୂଚିତ ହେଲା ପରି, ମନର ଶୋଭା ପ୍ରକାଶରେ ମଧ୍ୟ ଉଦାସୀନତା ଲକ୍ଷିତ ହୋଇଛି । ଏହାର ଅର୍ଥ ନୁହେଁ ଯେ, ମନ ଏଠାରେ ପୂରାପୂରି ଉପେକ୍ଷିତ । କିନ୍ତୁ କାବ୍ୟର ବର୍ଣ୍ଣନାରୁ ଯେଉଁ ମନର ସଂବାଦ ମିଳୁଛି, ତାହା ହେଉଛି ନାୟକ-ନାୟିକାଙ୍କ ମନର ସ୍ଥୂଳ ରୂପ । ଏହି ହେତୁ ବିଷାଦଯୋଗ ହୋଇଥିବା 'କଳ୍ପଲତା'ର ସ୍ଥୂଳ ମନର ସଂକେତ କାବ୍ୟର ବିଭିନ୍ନ ପଙ୍କ୍ତିରେ ଉତ୍କୀର୍ଣ୍ଣ ହୋଇଛି । ଦୃଷ୍ଟାନ୍ତ ମିଳୁଛି, ନାୟକର ମନ ପ୍ରିୟାର ମୃତ୍ୟୁ ଯୋଗୁଁ ଆତ୍ମତ୍ୟାଗର କଳ୍ପନା କରୁଛି; କିନ୍ତୁ ଆତ୍ମତ୍ୟାଗ କରୁ ନାହିଁ; ଯଥା—

ନଥି ପ୍ରାପତ ପାପୀର ହାଥର
ମେର ଅଭାଗ୍ୟ ହୋଇଲା ପଥର
ବାମାକୁ ବନ୍ଧି ବେଳେ ନ ରଖିଲା
ମୋର ସାହସ ଭରସା ତୁଟିଲା
କୃଷ୍ଣ କୁନ୍ତଳା ନଦୀରେ ଝାସିବି
କୁମାରୀ ସଙ୍ଗେ ଅଗ୍ନିରେ ପଶିବି
ଯାଇ କାହାର ମୁଖକୁ ଚାହିଁବି
ପୋଡ଼ି ଜୀବନ ଗରଳ ଖାଇବି
ପିତା ସ୍ନେହ ମଣ୍ଡଳରେ ରଜନ
ମୁଁ ତ ସେବକ ପଣେ ଭର୍ଜନ ।

(କଳ୍ପଲତା-୬ଷ୍ଠ ଛାନ୍ଦ : ୯୩-୯୭ ପଦ)

ଏଠି ନାୟକର ମନ ମୋହାଛନ୍ନ, ରୂପ ପିପାସାର ମୁଗ୍ଧ ମାଦକତାରେ ମଗ୍ନ । ପ୍ରିୟାର ଅପମୃତ୍ୟୁ ହେତୁ ନାୟକଠାରେ ଯେଉଁ

ବେଦନାବୋଧ ଉତ୍ପନ୍ନ ହୋଇଛି, ତାହା ମନର ମାଜଣାରେ ଯୌତ ସେବକର ନୈବେଦ୍ୟ ନୁହେଁ । 'ସେବକ ଫକିରୁ ଭଜନ୍'ରେ ବାଳ ନାୟକର ଉକ୍ତି ଅଭିମାନ-ପ୍ରେରିତ, ତାହା ଆତ୍ମନିବେଦନର ଭାଷା ନୁହେଁ । କବି ଯେଉଁ ଉପକରଣମାନ ନେଇ ସୌନ୍ଦର୍ଯ୍ୟର ଭୋଜ୍ୟଟିଏ ପ୍ରଜାଡ଼ିଛନ୍ତି, ତାହା ସବୁ ଦିଗରୁ ମନକୁ ତୃପ୍ତି ଦେଉନାହିଁ । କିଛି ଶିହରଣ ଏବଂ କିଛି ମାନସିକ ଉଚ୍ଚାଟନର ପ୍ରବାହ ଖେଳାଇ ଦେଉଛି ।

କିନ୍ତୁ କବି, ଯିଏ ସ୍ରଷ୍ଟା, ସେ ମନ ଭୁଲାଣିଆ ରୂପର ଧାନ୍ଧାମାନଙ୍କରେ ମଣିଷର ମଗ୍ନ ଚୈତନ୍ୟକୁ ଉଠାଇବାର ଅବ୍ୟବସ୍ଥା କରେ ନାହିଁ । ବରଂ ଏପରି ଅଭିପ୍ରାୟର ସୂଚନା ମିଳେ ନିର୍ମାଣକୌଶଳର କର୍ମରୁ । କବି ରବୀନ୍ଦ୍ରନାଥ ଗୋଟିଏ ଚମତ୍କାର ଉପଲକ୍ଷ ସାହାଯ୍ୟରେ ସ୍ରଷ୍ଟା ଓ ନିର୍ମାତାଙ୍କ ଅନ୍ତର ପ୍ରକୃତିକୁ ଚିହ୍ନେଇ ଦେଇଛନ୍ତି । ଉପଲକ୍ଷଟି ଉପନିଷଦରୁ ଆନୀତ । ଏଥିରେ କୁହାଯାଇଛି—ଗୋଟିଏ ତରୁଶାଖାରେ ଦୁଇଟି ପକ୍ଷୀ, ଗୋଟିଏ ପକ୍ଷୀ ଭୋଗ କରେ, ଅନ୍ୟ ପକ୍ଷୀଟି ଦେଖେ । ରବୀନ୍ଦ୍ରନାଥଙ୍କର ତର୍ଜମା ହେଉଛି; ଯେଉଁ ପକ୍ଷୀ ଭୋଗ କରେ, ସେ ନିର୍ମାଣ କରେ; ଯେଉଁ ପକ୍ଷୀ ଦେଖେ, ସେ ସୃଷ୍ଟି କରେ । ଭୋଗୀ ପକ୍ଷୀ ଯେଉଁ ଉପକରଣ ବଳରେ କାର୍ଯ୍ୟ କରିଥାଏ, ତାହା ସବୁ ବାହାରର ବସ୍ତୁ । କିନ୍ତୁ ଦ୍ରଷ୍ଟା ପକ୍ଷୀର ଉପକରଣ ହେଉଛି ଅନ୍ତର୍ଜଗତର । ଏହି ଅନ୍ତର୍ଜଗତର ଭୋଜ୍ୟ ହେଉଛି ସ୍ୱାତନ୍ତ୍ର୍ୟ; ଏହାର ମୂଲ୍ୟ ସ୍ଥାୟୀ । ତେଣୁ ସେ ସ୍ରଷ୍ଟା ଏବଂ ଅନ୍ୟ ପକ୍ଷୀଟି ହେଉଛି ଭୋକ୍ତା ।

## କାବ୍ୟ ସ୍ରଷ୍ଟା ଓ କାବ୍ୟ-ନିର୍ମାତା :

ପଣ୍ଡିତବର କବି ଅର୍ଜୁନ ଦାସ ସ୍ରଷ୍ଟା ନା କାବ୍ୟ-ନିର୍ମାତା ? କବିଙ୍କର ସୌନ୍ଦର୍ଯ୍ୟ-ଦୃଷ୍ଟି ଓ ଅଭିବ୍ୟକ୍ତି ଧାରାରୁ ସୂଚନା ମିଳେ ଯେ, ସେ ଜଣେ କାବ୍ୟ-ନିର୍ମାତା । ଅନ୍ତର୍ଜଗତକୁ ଉନ୍ମୀଳିତ କରି ମନକୁ ସ୍ପନ୍ଦନଶୀଳ କରାଇ ପାରିବା ଭଳି ସ୍ରଷ୍ଟାସୁଲଭ ଯୋଗ୍ୟତାର ଅଭାବ ଏଠି ବର୍ତ୍ତମାନ । କୌଣସି ସୌନ୍ଦର୍ଯ୍ୟଜନ୍ୟ ଛନ୍ଦ ମାନସିକ ଜାଗରଣର କାରଣ ହୋଇନାହିଁ ଅଥବା ଅପ୍ରତ୍ୟକ୍ଷକୁ ପ୍ରତ୍ୟକ୍ଷ କରିବାର ଶକ୍ତି ଯୋଗାଇ ନାହିଁ; ତେବେ ତାହା ସୃଷ୍ଟିର ନିତ୍ୟନବ ହେବ କିପରି ? ରୂପର ଆଡମ୍ବରରେ ଭୁଲିବା ସହଜ, କିନ୍ତୁ ବନ୍ଦୀ ହେବା କଷ୍ଟ । ଉମାଙ୍କ ହୃଦୟ ଜିଣିବା ପାଇଁ ଶିବ ତ କନ୍ଦର୍ପ ପାଖ ନ ଥିଲେ !

ଅତଏବ କାବ୍ୟ-ନିର୍ମାତା ଅର୍ଜୁନ ଦାସ ଯେ ଜଣେ ସଫଳ ଅକ୍ଷର ଶିଳ୍ପୀ, ଏହା ନିଶ୍ଚିତ । ଆଲୋଚ୍ୟ କବି ଏବଂ ତାଙ୍କର ପରଂପରାରେ ପ୍ରଭୃତିପାଳିତ ଅନ୍ୟାନ୍ୟ କାବ୍ୟ-ନିର୍ମାତାଙ୍କର କୃତିକୁ ଅନୁଶୀଳନ କରି, ଉତ୍କଳର ମାୟାଧର ମାନସିଂହ ଏଇ ସିଦ୍ଧାନ୍ତରେ ପହଂଚିଛନ୍ତି ଯେ ଶବ୍ଦଗୁଡ଼ିକୁ ସଜାଇ ଶୋଭା ସୃଷ୍ଟି କରିବା ଥିଲା ଏମାନଙ୍କର ଲକ୍ଷ୍ୟ ଓ ଆଦର୍ଶ । ଅର୍ଜୁନ ଦାସଙ୍କ ଠାରୁ ଏଇ ଧାରାର ଆରମ୍ଭ । ଅବଶ୍ୟ ଭଞ୍ଜଯୁଗରେ କିଛି ନୂତନତ୍ୱ, କିଛି କମନୀୟତା ଥିଲା ସତ, ଅର୍ଜୁନ ଦାସଙ୍କର ଶବ୍ଦ ସଜ୍ଜାରେ ହୁଏତ ସାରଲ୍ୟ ଅଛି । ସେ ଶୋଭାକାରୀ ଶବ୍ଦର ମଞ୍ଜୁଳ ମୋହରେ ଆବଦ୍ଧ ହୁଅନ୍ତି । ମନର ସୌନ୍ଦର୍ଯ୍ୟ ପ୍ରକାଶନ ପାଇଁ ତାଙ୍କର ପ୍ରଯତ୍ନ ଗୌଣ । କାବ୍ୟ ଭିତରୁ କବିଙ୍କର ମନ ଓ ମନନର ପରିଚୟ ଯାହା ମିଳେ, ତାହା ସାଧାରଣ ଓ ଗତାନୁଗତିକ ।

## କବି ମନର ଭୂମିକା :

'ରାମ ବିଭା'ର କବି ଅର୍ଜୁନ ଦାସ, ରାମଚନ୍ଦ୍ରଙ୍କ ଚରିତ ବର୍ଣ୍ଣନାରେ ଅଯୋଧ୍ୟା ଓ ଚତୁଃପାର୍ଶ୍ୱର ସାଂସ୍କୃତିକ ବାସ୍ତବତାକୁ ସ୍ମରଣ କରି ନାହାଁନ୍ତି; ସ୍ମରଣ କରିଛନ୍ତି ଶ୍ରୀକ୍ଷେତ୍ରର ପରିବେଶକୁ ଏବଂ ଏହାର ପାରଂପରିକ ଚଳଣିକୁ । କାରଣ କବି-ମନ ଶ୍ରୀକ୍ଷେତ୍ରର ଐତିହ୍ୟ ପ୍ରତି ଥିଲା ବିଶେଷ ସଚେତନ । ଏଣୁ କବି ଅଯୋଧ୍ୟାର ଭୌଗୋଳିକ ପରିବେଶକୁ ଏକାନ୍ତ ଭାବେ ଉପଲବ୍‌ଧି କରିବା ଲାଗି ଯତ୍ନ କରି ନାହାଁନ୍ତି । କାବ୍ୟର କଥା-ବସ୍ତୁ ଅଯୋଧ୍ୟାର ପରିବେଶରୁ ଜାତ ହୋଇଥିଲେ ବି କବି ଐତିହ୍ୟାନୁରକ୍ତ ମନ ନେଇ ତାହାକୁ ଶ୍ରୀକ୍ଷେତ୍ରର ବାତାବରଣ ଭିତରେ ପ୍ରକାଶ କରିଛନ୍ତି । ଦ୍ୱିତୀୟ କାରଣ ହୋଇ ପାରେ କବି-ମନର ଇଷ୍ଟପ୍ରୀତି ।

ଓଡ଼ିଆ କବି-କୁଳ ଜଗନ୍ନାଥଙ୍କୁ ଜାତିର 'ଇଷ୍ଟ' ରୂପେ ପ୍ରାୟ ଗ୍ରହଣ କରିଥାନ୍ତି । ଏହି କବି ଚଳଣିର ଅନୁପ୍ରେରଣାରେ କବି ଅର୍ଜୁନ ଦାସ, ରାମଚନ୍ଦ୍ରଙ୍କୁ ଜଗନ୍ନାଥଙ୍କ ସ୍ୱରୂପରେ ଦେଖିଛନ୍ତି । ତେଣୁ ରାମ ଚରିତର ଉଲ୍ଲେଖ ଅବସରରେ ଜଗନ୍ନାଥ ସ୍ୱାଭାବିକ ଭାବେ କାବ୍ୟ ଓ କଥା ଭିତରକୁ ପ୍ରବେଶ କରିଛନ୍ତି । ଏ କ୍ଷେତ୍ରରେ ଶ୍ରୀରାମଚନ୍ଦ୍ର ଓ ଶ୍ରୀ ଜଗନ୍ନାଥ ଭିନ୍ନ ଭିନ୍ନ ସ୍ୱରୂପ ବୋଲି କବି ବିଚାରି ନାହାଁନ୍ତି । ବର୍ଣ୍ଣନାର ଧାରା ଏଥି ଯୋଗୁଁ କାବ୍ୟ-କଥାକୁ ଭିନ୍ନ ବାଟରେ ନେଇ ଯାଇଛି । ଏତାଦୃଶ ଜଗନ୍ନାଥକୈନ୍ଦ୍ରିକ ମନୋଭାବ ଆଧ୍ୟାତ୍ମିକ ଦୃଷ୍ଟିରୁ ସତ୍ୟ ଓ ଗ୍ରହଣୀୟ ହୋଇପାରେ, ମାତ୍ର ରାମାୟଣ କଥା-ବସ୍ତୁର ବିଶ୍ଳେଷଣ ଅନୁକଳ୍ପନାରେ ଏଥିରେ ବ୍ୟତିକ୍ରମ ଦେଖା ଦେଇଛି ।

ଶ୍ରୀ ଜଗନ୍ନାଥଙ୍କ ସ୍ୱରୂପ ବନ୍ଦନ ଅବସରରେ ଅବକାଶ ଉତ୍ତାରୁ 'ଗୋପାଳ ବଲ୍ଲଭ ଲାଗି ପର୍ଯ୍ୟନ୍ତ ଶ୍ରୀମନ୍ଦିରର ଯାବତୀୟ ନୀତିର ସଂକେତ

'ରାମ ବିଭା' କାବ୍ୟର ପ୍ରଥମ ଛାନ୍ଦରେ ସୂଚିତ ହୋଇଛି । ପ୍ରତ୍ୟେକ ଛାନ୍ଦର ଶେଷରେ କବିଙ୍କର ଉଚ୍ଚାରିତ ଆପଣା ପ୍ରାଣର ଜଗନ୍ନାଥ-ଭାବନାକୁ ପ୍ରକଟିତ କରିଛି । କାବ୍ୟାରମ୍ଭରୁ ଜଗନ୍ନାଥ-ବନ୍ଦନା ପାରଂପରିକ କାବ୍ୟ-କଳାର ଅନୁରୋଧରେ ହୁଏତ ମଙ୍ଗଳାଚରଣର ସ୍ଥାନ ପୂରଣ କରିଛି । ମାତ୍ର ପ୍ରତ୍ୟେକ ଛାନ୍ଦରେ ଜଗନ୍ନାଥ ପ୍ରସଙ୍ଗ ଉତ୍‌ଥାପନର ପ୍ରାସଙ୍ଗିକତା କ'ଣ ? ଏପରି ବର୍ଣ୍ଣନାରୁ କବି-ମନର ସ୍ୱରୂପ ବିଶ୍ଳେଷଣ କଲେ ମନେହୁଏ, କବି ଅର୍ଜୁନ ଦାସ, ମାନସିକ ଆହ୍ଲାଦ ଓ କାମନା ପୂର୍ତ୍ତି ପାଇଁ ଜଗନ୍ନାଥଙ୍କର ଆଶ୍ରୟ ନେଇଛନ୍ତି କିମ୍ବା ଜଗନ୍ନାଥ ସଂସ୍କୃତିର ଅଖଣ୍ଡ ପ୍ରବାହ କବି ମନକୁ ଏପରି ସିକ୍ତ କରିଛି ଯେ ସେ ବିଷୟ ନିର୍ବିଶେଷରେ ଏହାର ସାନ୍ନିଧ୍ୟ ଭୋଗ ପାଇଁ ବାଧ୍ୟ ହୋଇଛନ୍ତି ।

କେବଳ 'ରାମ ବିଭା' କାହିଁକି, 'କଳ୍ପଲତା' କାବ୍ୟରେ ମଧ୍ୟ ଜଗନ୍ନାଥ-ଚିନ୍ତନର ଆଭାସ ମିଳିଥାଏ । କବି ଜଗନ୍ନାଥଙ୍କୁ ସୃଷ୍ଟିର ରାଜା ଓ ସଂସାର ତିମିର ଚନ୍ଦ୍ର ରୂପରେ କଳ୍ପନା କରି ତାଙ୍କ ପ୍ରତି ଆପଣାର ଆନୁଗତ୍ୟ କାବ୍ୟର ବିଭିନ୍ନ ଛନ୍ଦରେ ପ୍ରକାଶ କରିଛନ୍ତି । ଏହା କାବ୍ୟର ଗଠନ ପରିପାଟୀ ଓ ସୌନ୍ଦର୍ଯ୍ୟ-ସଂପାଦନରେ ବିଶେଷ ମନୋହାରିତା ସଂଗ୍ରହ କରୁ ନାହିଁ । କେବଳ କବିଙ୍କର ଈଶ୍ୱରକେନ୍ଦ୍ରୀ ମନନର ପ୍ରତିଧ୍ୱନି ଏଥିରୁ ଶ୍ରୁତିଗୋଚର ହେଉଛି । କବିଙ୍କର ବିଶ୍ୱାସ ଶ୍ରୀ ଜଗନ୍ନାଥ ହେଉଛନ୍ତି ସର୍ବ ଉପାସନାର ପ୍ରତୀକ । ତାଙ୍କୁ ଦାସ-ବତ୍ସଳ ଭାବି ଆପଣା ମନର ଅର୍ଘ୍ୟ ସେ ନିବେଦନ କରିଛନ୍ତି । ରାମ ବିଭା ଓ କଳ୍ପଲତା କାବ୍ୟ ଦୁଇଟି ଭକ୍ତି-କାବ୍ୟ ନୁହେଁ, କଥା-କାବ୍ୟ ବା ଆଖ୍ୟାୟିକା କାବ୍ୟ । ଏଥିରୁ ତଦ୍‌ଗତ ଭକ୍ତିଭାବନାର ସ୍ଥିତି ଅନ୍ୱେଷଣ କରିବା ପ୍ରାସଙ୍ଗିକ ହୋଇ ନ ପାରେ । ତଥାପି ଈଶ୍ୱର ସଂପର୍କୀୟ ଅଭିବ୍ୟକ୍ତି କାବ୍ୟଟିରେ ବାରମ୍ବାର ଘଟୁଥିବାରୁ କବିଙ୍କର

ମନେହୁଏ ଜଗନ୍ନାଥଙ୍କ ସହିତ ଭାବଗତ ସଂପର୍କ ରକ୍ଷା କରିବାରେ କବି ବିଶେଷ ଯତ୍ନ କରିଛନ୍ତି । ଏହି ଭାବ ହିଁ ହେଉଛି ଭକ୍ତର ସମ୍ବଳ। ହୃଦୟ ଦେଇ କିଂବା ସେବାପରାୟଣ ହୋଇ ଉପାସନାରେ ମଜ୍ଜିଲେ ବ୍ୟକ୍ତି ମନରେ ଯେଉଁ ଅବସ୍ଥାର ସୃଷ୍ଟି ହୁଏ, ତାହାକୁ ଭକ୍ତି ତନ୍ମୟ ଅବସ୍ଥା କୁହାଯାଏ । କବି ଅର୍ଜୁନ ଦାସଙ୍କର ମନ ଏହି ଅବସ୍ଥା ପ୍ରାପ୍ତ ହୋଇଛି । ତେଣୁ ସେ ଭକ୍ତ, ତାଙ୍କର ଭକ୍ତିବୋଧ ସଂପୂର୍ଣ୍ଣ ବ୍ୟକ୍ତି-କେନ୍ଦ୍ରିକ; ଏହାର କୌଣସି ପ୍ରକୃତ ଆଭିମୁଖ୍ୟ ନାହିଁ କିଂବା କୌଣସି ସଂପ୍ରଦାୟରେ ଏହା ଅଂଗୀଭୂତ ହୋଇ ନାହିଁ ।

ଷୋଡ଼ଶ ଶତାବ୍ଦୀରେ ଯେପରି ବୈଷ୍ଣବ ଭକ୍ତିଧାରାର ବିଭିନ୍ନ ସାଂପ୍ରଦାୟିକ ସ୍ରୋତ ଦେଶର ଜନ ଜୀବନକୁ ଆପ୍ଲୁତ କରିଥିଲା ଏବଂ ଏହାର ପରିଣାମରୁ ବହୁ ସନ୍ଥ କବିଙ୍କର ଆବିର୍ଭାବ ଜାତିର ସାହିତ୍ୟ-ଭୂମିରେ ପରିଦୃଷ୍ଟ ହୋଇଥିଲା ଓ ସେମାନେ ଯେପରି ଆପଣା ମାର୍ଗ ଓ ଆଶ୍ରୟ ଶିବିରର ଦର୍ଶନ ସଚେତନ ଭାବରେ ନିଜ ନିଜର କାବ୍ୟ-କବିତାରେ ପ୍ରକାଶ କରୁଥିଲେ, କବି ଅର୍ଜୁନ ଦାସ ସେପରି କୌଣସି ଗୋଷ୍ଠୀଭୁକ୍ତ ଧାର୍ମିକ ଭାବନା ତାଙ୍କର କାବ୍ୟ-କୃତିରେ ପ୍ରକାଶ କରି ନାହାନ୍ତି । ତେଣୁ ସେ ସଂପ୍ରଦାୟମୁକ୍ତ ଜଣେ ଜଗନ୍ନାଥ ଭକ୍ତ ।

ତାଙ୍କ ଈଶ୍ୱର ଶ୍ରୀଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ସଂସ୍କୃତିର ଆଧାର । କବି ଜଗନ୍ନାଥଙ୍କୁ ସ୍ମରଣ କରିଛନ୍ତି ଅର୍ଥ, ଉତ୍କଳୀୟ ସଂସ୍କୃତିର ଗୌରବକୁ ଅନୁସରଣ କରିଛନ୍ତି । ଆମର ସାଂସ୍କୃତିକ ଦିଗନ୍ତର ଛାୟାଛବି ଜଗନ୍ନାଥଙ୍କର ବିଭିନ୍ନ ଯାତ୍ରାବିଧି ଓ ଉପାସନା ଅନୁଷ୍ଠାନ ଜରିଆରେ ସେ ଅବଲୋକନ କରିଛନ୍ତି । ଓଡ଼ିଆର ବିଶ୍ୱାସକୁ

ଶ୍ରୀକ୍ଷେତ୍ରର ପରିସୀମା ଭିତରୁ ସେ ଖୋଜି ପାଇଛନ୍ତି । ସମାଜର ଧରାବନ୍ଧା ଚଳଣିକୁ କାବ୍ୟର ବିଭିନ୍ନ ଘଟଣା ଜରିଆରେ କବି ପ୍ରକଟିତ କରିଛନ୍ତି । ବିଧି ବିଧାନସମ୍ମତ ଓ ଅନୁଷ୍ଠାନସର୍ବସ୍ୱ ସମାଜର ରୂପ କବିଙ୍କର କାବ୍ୟରେ ହିଁ ପ୍ରକାଶ ପାଇଛି । ସମାଜର ବ୍ୟକ୍ତିତ୍ୱ କଣ ହେବା ଉଚିତ କିମ୍ବା ମାନବର ବାସ୍ତବ ଜୀବନ ନିର୍ବାହ ପାଇଁ ଏହାର ଦାୟିତ୍ୱ କ'ଣ—ଏ ସଂପର୍କରେ କବିଙ୍କର କୌଣସି ବକ୍ତବ୍ୟ ନାହିଁ । ତେଣୁ କାବ୍ୟ ଦୁଇଟିରୁ କବିଙ୍କର ସାମାଜିକ ଦର୍ଶନ କଣ ଥିଲା, ତାହା ଖୋଜି ପାଇବା ସମ୍ଭବ ନୁହେଁ । କବି, କାବ୍ୟ-କଥା-ବସ୍ତୁରେ ଯେଉଁମାନଙ୍କୁ ଅନ୍ତର୍ଭୁକ୍ତ କରିଛନ୍ତି, ସେମାନେ ପୌରାଣିକ ନାୟକ-ନାୟିକା କିମ୍ବା କାଳ୍ପନିକ ଜଗତର ଚରିତ ।

ରାମ ସୀତା ଏବଂ ବସନ୍ତକ ସୁରେଖା ବା ଅମର ଶିଖର-କଳ୍ପଲତା ପ୍ରଭୃତି ଅପ୍ସରା-ଅପ୍ସରୀ ଓ ପୌରାଣିକ ଚରିତଙ୍କର ଜୀବନ-ଘଟଣା କାବ୍ୟ-କଥାରେ ଅଂଗୀଭୂତ କଲାବେଳେ ଅର୍ଜୁନ ଦାସଙ୍କର କବି ମନ ରୁକ୍ଷ ବାସ୍ତବ ଜଗତଠାରୁ ଦୂରେଇ ଯାଇଛି । କାବ୍ୟରେ ସେ ଯେଉଁ ପରିବେଶର ବର୍ଣ୍ଣନା ଦେଇଛନ୍ତି ବା ଯେଉଁ ସ୍ଥାନମାନଙ୍କର ନାମୋଲ୍ଲେଖ କରିଛନ୍ତି, ତାହାର ଅନ୍ତଃସ୍ଥଳରେ କିଛି କାଳ୍ପନିକ ଅବବୋଧ ଏବଂ ଆଭିଜାତ୍ୟର ଅଭିମାନ ନିହିତ । ମଲ୍ଲାଳ ଦେଶ, ମକରନ୍ଦ ବନ, ମଧୁକଣ୍ଡ ବୋଲି ନଦୀ, ବିଦ୍ୟା ବିନୋଦ ନାମକ ରାଜା, ସୁଗନ୍ଧ ନାମକ ପଟ୍ଟମହାଦେଈ, ସୁର ବାମାଙ୍କ କ୍ରୀଡ଼ା ସ୍ଥଳ, ମକରନ୍ଦ ବନରେ ଷଡ଼ଋତୁ ସହିତ ମଦନର ବିଜୟ ଇତ୍ୟାଦି ବର୍ଣ୍ଣନା ଅନ୍ତରାଳରେ ଆଭିଜାତ୍ୟର ଅଂଗୀକାର ଓ କଳ୍ପନା-ପ୍ରବଣତାର ମୁଦ୍ରାଙ୍କ ଖୁବ୍ ସ୍ପଷ୍ଟ ।

## କବିଙ୍କ କାବ୍ୟରେ ମାନବର ରୂପ :

ଚେଣ୍ଣୁ କବି ତାଙ୍କ କାବ୍ୟ ଦ୍ୱୟରେ ଯେଉଁ ମାନବର ସ୍ୱରୂପ ଅଂକନ କରିଛନ୍ତି, ସେ ଇହଜଗତର ଆହ୍ଲାଦ ଓ ଆପଦ ଭିତରେ ପରିବର୍ଦ୍ଧିତ ନୁହେଁ । ତା'ଠାରେ ସାଧାରଣ ମଣିଷର ଶକ୍ତିଠାରୁ ଦୈବୀ ଶକ୍ତିର ଚିହ୍ନ ବେଶୀ । ସେ ଆଧିଭୌତିକ ସତ୍ତାରେ ମୂର୍ତ୍ତିମାନ । ଏଣୁ ମାନବ ଚରିତ୍ରରେ ଅଲୌକିକତାର ଦୃଷ୍ଟାନ୍ତ କବି ବିଶେଷ ମାତ୍ରାରେ ଅଂକନ କରିଛନ୍ତି । ଅଭିଶପ୍ତ ଅପ୍‌ସରା-ଅପ୍‌ସରୀଙ୍କୁ ମର୍ତ୍ତ୍ୟରେ ରାଜକୁମାର-ରାଜକୁମାରୀ ରୂପେ ଜନ୍ମ ନେବାର ସୁଯୋଗ ଦେଇ କବି ବର୍ଣ୍ଣନା ଛଳରେ ତାଙ୍କଠାରେ ଯେତିକି ପରିମାଣରେ ମାନବୀୟ ଶଂକା ଓ ସ୍ୱପ୍ନର ସମ୍ଭାବନା ସଂଚ୍ଚାର କରିଛନ୍ତି, ତାହାର ଆବେଦନ ସେତେ ଶକ୍ତିଶାଳୀ ନୁହେଁ । କାରଣ ଏଠି ସମସ୍ୟା ସହ ମଣିଷର ସଂଘର୍ଷର ତୀବ୍ରତା ଆଦୌ ନାହିଁ । ବିଡ଼ମ୍ବିତ ଭାଗ୍ୟକୁ ନେଇ ଅମରଶିଖର ବା କଳ୍ପଲତା ପତିପତ୍ନୀ ରୂପେ ପରିଣୀତ ହେବା ପରେ ପୁନଶ୍ଚ ଅମର-ପୁରୀ ଯିବେ—ଏହା ପୂର୍ବରୁ ସ୍ଥିରୀକୃତ । ଯୌବନପ୍ରାପ୍ତି ପରେ ଅପ୍‌ସରା କୁମାରୀ ମନରେ ଉଦ୍ଦିଷ୍ଟ ପ୍ରଣୟୀଙ୍କୁ ଲଭ କରିବା ପାଇଁ ଯେଉଁ ବ୍ୟାକୁଳତା ଜନ୍ମିଛି, ମନରେ ଯେଉଁ ଆଶଂକା ଜାତ ହୋଇଛି, କୌଣସି ଜଙ୍ଗମ ବା ଶୈବ ସନ୍ନ୍ୟାସୀ ଜରିଆରେ ଏହାକୁ ଦୂର କରିବା ପାଇଁ ଯେତିକି ଉପାୟ ଅବଲମ୍ବିତ ହୋଇଛି, ତାହା ଧରାବନ୍ଧା ନିୟମର ବଶବର୍ତ୍ତୀ । ଏଥିପାଇଁ ପ୍ରଣୟିମାନଙ୍କୁ ଅବସ୍ଥାଚକ୍ର ସହିତ କୌଣସି ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ିନାହିଁ । କବି ମନ ଜୀବନର ଯେଉଁ ଅବସ୍ଥା ସହିତ ସଂପର୍କ ରଖିଛି, ତାହା ସତ୍ୟାତ୍ମକ ଜୀବନର ଦ୍ୟୋତକ ନୁହେଁ । ସତ୍ୟର ଲକ୍ଷ୍ୟ ହେଉଛି ଏହିପରି—ସତ୍ୟ

ହେଉଛି ଚିରନ୍ତନ । ବାସ୍ତବତା ସତ୍ୟର ଏକ ଅଂଶ । ସମୟ ଓ ଘଟଣା ଯେବେ ବାସ୍ତବତାର ପରିବର୍ତ୍ତନ ଘଟେ । କିନ୍ତୁ ସତ୍ୟର ବଳୟ ନାହିଁ, ତାହା ଅପରିବର୍ତ୍ତନୀୟ । ସତ୍ୟର ନିଷ୍ପପଠ ଛଂକନରେ ସାହିତ୍ୟ ହୁଏ ଚିରନ୍ତନ । ସତ୍ୟର ରୂପାୟନ ଅବସରରେ ବାସ୍ତବ ଓ ମଣିଷର ରୂପ ଅପଣା ଛୁଏଁ ସାହିତ୍ୟକୁ ପ୍ରକାଶ ଆଲୋକରେ ଯାପ୍ତ କରେ ।

ମାତ୍ର କାବ୍ୟ ଦ୍ୱୟର ଅଧ୍ୟୟନରୁ ପ୍ରତୀତ ହୁଏ ଯେ, ମାନବର ସାମଗ୍ରିକ ରୂପ ଅନ୍ୱେଷଣ ଲାଗି କବି ମନରେ ପରିଷ୍କାର ଧାରଣା ଜାତ ହୋଇନାହିଁ । ମାନବକୁ ଜଗତର ବୈଚିତ୍ର୍ୟ ଭିତରୁ ଆବିଷ୍କାର କରିବା ଲାଗି ତତ୍ପରତା ମଧ୍ୟ କବିଙ୍କଠାରେ ପ୍ରକାଶ ପାଇନାହିଁ । ମର୍ତ୍ତ୍ୟ ତାଂକ ପାଇଁ ଏକ ରମଣୀୟ ନିକେତନ । ଏହାର ପ୍ରତ୍ୟେକ ଅଧିବାସୀ ଯେ ଲୌକିକ ଆନନ୍ଦ ଲାଗି ସଂଗ୍ରାମରତ, ଏମିତି କିଛି ଧାରଣା ମଧ୍ୟ କବିଂକ ଉଚ୍ଚାରଣରୁ ମିଳୁ ନାହିଁ । ଦୁଇଟି କାବ୍ୟରେ ସେ ଯେଉଁ ପୃଥିବୀର ଛାୟାଛବି ଅଂକନ କରିଛନ୍ତି, ତାହା ଯେ ସତ୍ୟର ସକଳ କଣିକାରେ ସତେଜ; ତାହା ମଧ୍ୟ ବିଶ୍ୱାସ ହେଉ ନାହିଁ ।

କଳ୍ପଲୋକକୁ ମର୍ତ୍ତ୍ୟଲୋକ ସହିତ ମିଶାଇ ଦେବାର ଉଦ୍ୟମ କରିଛନ୍ତି କବି । ଏଣୁ ତାଂକର କାବ୍ୟ ହୋଇଛି; କାଳ୍ପନିକ ବା ପୌରାଣିକ । କାବ୍ୟର ପ୍ରକାଶ ଭଂଗୀରେ ଯଦିଓ କଥିତ୍ ରସାତ୍ମକତା ଆସିଛି, ତାହା କେବଳ କଳ୍ପନାକୁ ଉପଜୀବ୍ୟ କରି ସମ୍ଭବ ହୋଇଛି । ଅବଶ୍ୟ ରସାତ୍ମକ ବାକ୍ୟ ହିଁ କାବ୍ୟ; ଏହା କାବ୍ୟ ସଂପର୍କରେ ଏକ ପ୍ରାଚୀନ ସଂଜ୍ଞା । ତଥାପି ରସାତ୍ମକତା ଥାଇ ସୁଦ୍ଧା କାବ୍ୟ ଯଦି ସତ୍ୟର ଅଭିବ୍ୟକ୍ତିରୁ ଦୂରେଇ ଯାଏ, ତାହାହେଲେ ଏହା ଜୀବନ ପାଇଁ ପ୍ରୟୋଜନ ହେବ କି ?

# କବିଙ୍କ କାବ୍ୟ-ତତ୍ତ୍ୱ

କବିଙ୍କ ମନର ଅନୁଶୀଳନରୁ ପ୍ରତୀତ ହୁଏ ଯେ ସେ ଏପରି ଆଶଂକାକୁ ପ୍ରତିହତ କରିବାଲଗି କୌଣସି ପ୍ରଯତ୍ନ କରିନାହାଁନ୍ତି । କଳ୍ପନା ଓ ସତ୍ୟର ସମନ୍ୱୟ ଥିଲେ ଏଇ ଆଶଙ୍କାର ପ୍ରଶ୍ନ ଉଠୁ ନଥାନ୍ତା । ପ୍ରୟୋଜନ ବୋଧ ଓ କଳା-ବୋଧ—ଏଇ ଦୁଇ ଧାରଣାର ପୃଥକ ଅସ୍ତିତ୍ୱ ସାହିତ୍ୟ-ଶିଳ୍ପରେ ସେତେବେଳେ ସ୍ୱୀକୃତ ହୋଇ ନ ଥିଲି । ସମାଜ-ଜୀବନ ସହିତ ସାହିତ୍ୟର ସମ୍ପର୍କ ପ୍ରତି ସଚେତନତା ବ୍ୟାବହାରିକ ଦୃଷ୍ଟିରୁ କବିମାନଙ୍କ ମନରେ ପ୍ରବେଶ କରି ନଥିଲି । କାବ୍ୟାମୋଦୀ ମାନଙ୍କ ମନରେ ରସବୋଧର ଜାଗରଣ ଏବଂ ନୈତିକ ଆଧ୍ୟାତ୍ମିକ ଚେତନାର ଉତ୍ତରଣ ଲଗି କବି-କୁଳ ଆପଣା କାବ୍ୟ ରଚନା ପ୍ରକ୍ରିୟାକୁ ସେହି ମାର୍ଗରେ ହିଁ ପରିଚାଳିତ କରୁଥିଲେ । କାବ୍ୟ-କୃତିଟି କେଉଁ ଗୌରବ ଲାଭକରିବ; ଏହା କ୍ଲାସିକ-କାବ୍ୟ-ସିଦ୍ଧି ପାଇବ କି ନାହିଁ କିମ୍ବା ସାଧାରଣ ପଦ୍ୟ-ବନ୍ଧ ରଚନାର ମର୍ଯ୍ୟାଦା ହେବବ—ଏଥିପ୍ରତି ସଜ୍ଞାନ ସଚେତନତା ଦେଖାଯାଉ ନଥିଲି ; କହିଲେ ଚଳେ । କ୍ଲାସିକ-ଅବବୋଧ କ'ଣ ? ଜୀବନ, ପରିବେଶ, ନୀତି ଓ ସୌନ୍ଦର୍ଯ୍ୟ ଇତ୍ୟାଦି ପ୍ରତି କେଉଁ ଅନ୍ୱେଷାରୁ ଏହାର ଉତ୍ପତ୍ତି; ସେପରି କିଛି ସ୍ପଷ୍ଟ ଧାରଣା କବିଙ୍କର ନଥିଲି ।

ପରିମିତ ବିନ୍ୟାସ, ସୁସଜ୍ଜିତ ଘଟଣାର ଉପସ୍ଥାପନା, ସତ୍ୟ ସହ ଐକାତ୍ମକ ସମ୍ବନ୍ଧ, କଳ୍ପିତ ଆୟତନ ମଧ୍ୟରେ ଭାବ ଓ ଚିନ୍ତାର ସୁଗମ୍ଭୀର ପ୍ରସାର-ପରିଣତି ଏବଂ ଜୀବନ-ଜିଜ୍ଞାସାର ଉଦାତ୍ତ ଉନ୍ମୋଚନ ; ସର୍ବୋପରି ଶାନ୍ତ-ନିୟମର ମାର୍ଜିତ ଅନୁସରଣ ଜରିଆରେ ସୌନ୍ଦର୍ଯ୍ୟର ସୃଷ୍ଟି ସାଧନ ହେଉଛି କ୍ଲାସିକ-କବିର ସ୍ୱଧର୍ମ ।

କ୍ଲାସିକ ରଚନାରେ ସତ୍ୟ ଓ ସୌନ୍ଦର୍ଯ୍ୟର ଐକ୍ୟ ସଂସ୍ଥାପନ ନିମନ୍ତେ କବି ମନୀଷା ବିଶେଷ ତତ୍ପର । କାରଣ ହୁଏତ ସ୍ପଷ୍ଟ । ଜୀବନର ଅନ୍ତର୍ଜଗତ ଓ ବହିର୍ଜଗତର ନାନାବିଧ ଲୀଳା ଓ ଲୟର ସୌନ୍ଦର୍ଯ୍ୟ ମୂର୍ତ୍ତି ରଚନା କଲାବେଳେ କବି ବା କଳାକାର ଐକ୍ୟ ସନ୍ଧାଣୀ ନ ହେବ କେମିତି ?

କାରଣ ଜୀବନର ସୌନ୍ଦର୍ଯ୍ୟ, ନିର୍ଭର କରେ ପ୍ରତ୍ୟେକ ଅଙ୍ଗ ସଙ୍ଗେ ପ୍ରତ୍ୟେକ ଅଙ୍ଗର ସମୀଭୂତ ଓ ସୁନିବଦ୍ଧ ଐକ୍ୟ ଉପରେ । ସେହିପରି କାବ୍ୟର ଅନ୍ତର୍ନିହିତ ଗୁଣ ଓ କଳାତ୍ମକ ଐଶ୍ୱର୍ଯ୍ୟ ନିର୍ଭରକରେ ସତ୍ୟଯୁକ୍ତ ସୌନ୍ଦର୍ଯ୍ୟର ସମୁନ୍ନତ, ସୁଗମ୍ଭୀର ବିନ୍ୟାସ-ନୈପୁଣ୍ୟରେ । ଏହି ଗୁଣରୁ କ୍ଲାସିକ ରଚନାରେ ପ୍ରାପ୍ତ ସତ୍ୟ ସତ୍ୟାତ୍ମକ କାବ୍ୟର ରସାତ୍ମକ ଅଭିବ୍ୟକ୍ତି ହିଁ ପ୍ରାଧାନ୍ୟ ଲାଭ କରିଥାଏ ; ଏଥିପାଇଁ ଏହା ମୌଳିକ ଓ ଚିରାୟୁତ ହେବାର ମର୍ଯ୍ୟାଦା ପାଏ । କିନ୍ତୁ ଏଇ ବିଧାନମତେ ବିଚାରିଲେ; ଅର୍ଜୁନ ଦାସଙ୍କର କବି-ମନ କ୍ଲାସିକ ଦୃଷ୍ଟିର ପୋଷକତା କରିନାହିଁ, ରୋମାନ୍ସ ଧର୍ମୀ ମନନ ହେଉଛି ତାଙ୍କ କାବ୍ୟ-ତତ୍ତ୍ୱର ମୂଳ କଥା—ରସବାଦୀ ଅଭିପ୍ରାୟ ଏହାର ପ୍ରେରକ ଲକ୍ଷଣ ।

କାବ୍ୟ ରଚନା ବ୍ୟାପାରରେ କବି ଅର୍ଜୁନ ଦାସ, ପାରମ୍ପରିକ ଅଭ୍ୟାସ-ବଶଃ । ମିତଜ୍ଞାନ, ଆଧ୍ୟାତ୍ମିକ ବୋଧର ଜାଗରଣ ଏବଂ ରସାମୋଦୀ ଆତ୍ମାର ପ୍ରୀତ୍ୟର୍ଥେ ତାଙ୍କର କାବ୍ୟ ରଚନା । କାବ୍ୟ ରୂପକ 'ଅମୃତ ରସ'ର ଶ୍ରବଣ ଓ ପଠନ ଦ୍ୱାରା ଏହି ଉଦ୍ଦେଶ୍ୟ ପୂର୍ଣ୍ଣ ହେବାର ଧାରଣା ତାଙ୍କ ମନରେ ଥିଲା । ତେଣୁ କାବ୍ୟ ସଂରଚନା ବେଳେ ଆଙ୍ଗିକ କ୍ଷେତ୍ରରେ ପରୀକ୍ଷା ପ୍ରବଣତା

ତାଙ୍କୁ ଛୁଇଁ ନଥିଲା । ଉକ୍ତର ଆର୍ତ୍ତ ବଲ୍ଲଭ ମହାନ୍ତି, ଅର୍ଜୁନ ଦାସଙ୍କ କବିତ୍ୱ ସମ୍ପର୍କରେ କହନ୍ତି—"ପ୍ରାଥମିକ କବି ମାନଙ୍କର କବିତ୍ୱରେ ଗୃଢ଼ାର୍ଥର ବାହୁଲ୍ୟ ନ ଥିଲେ ହେଁ ତାହା ସାରଲ୍ୟ ଓ ସୌନ୍ଦର୍ଯ୍ୟରେ ମୂର୍ଚ୍ଛିତ ଅଟେ ।" ※

ସାରଲ୍ୟ ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବିଚାର କଲେ, ଅର୍ଜୁନ ଦାସଙ୍କର କାବ୍ୟଗୁଣ ସାରଲ୍ୟ ଉପରେ ଯେତିକି ନିର୍ଭରଶୀଳ, ସୌନ୍ଦର୍ଯ୍ୟ ନିକଟରେ ସେତିକି ନୁହେଁ । ଛନ୍ଦ ଓ ପଦ ସଂଯୋଜନାରେ ତାଙ୍କ କବି-କର୍ମର ସ୍ଫୂର୍ତ୍ତି । କାହାଣୀ-କଥନ ଶୈଳୀରେ ସେ କାବ୍ୟର କଥାବସ୍ତୁକୁ ସରଳିତ କରିଛନ୍ତି । ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ର ଅନୁମତେ ନାୟିକାର ରୂପ-ଯୌବନ ବର୍ଣ୍ଣନା, ବାସର ଗୃହ ବର୍ଣ୍ଣନା, ରତି ଲୀଳାର ଉପଚାର, ସଖୀ ମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି, ଚିଠାଉ ଓ ଚିଟପଟ ପ୍ରେରଣ ଇତ୍ୟାଦି କବି ପ୍ରଥାର ଅନୁସରଣ ସେ କରିଛନ୍ତି । ଏହି ଦୃଷ୍ଟିରୁ କବିଙ୍କର କାବ୍ୟ-ତତ୍ତ୍ୱରେ ପ୍ରାଚ୍ୟ ପଦ୍ଧତିହିଁ ପ୍ରତିଫଳିତ ହୋଇଛି ।

ତାଙ୍କ କାବ୍ୟ-କୌଶଳରେ ଏକାଧିକ ନୂତନ ବିଷୟର ସଂଯୋଜନା ନାହିଁ । କେବଳ କାବ୍ୟ ରଚନା ଅବସରରେ କବିମାନେ ପ୍ରୟୋଗ କରୁଥିବା 'ମଙ୍ଗଳା ଚରଣ'ର ଉଲ୍ଲେଖ ବେଳେ ସେ ଶ୍ରୀ ଜଗନ୍ନାଥ ବନ୍ଦନା ପ୍ରବର୍ତ୍ତନ କରିଛନ୍ତି ; ଯାହାକି ପରବର୍ତ୍ତୀ

---

※ ରାମ ବିଭା (୧୯୫୩ ସଂସ୍କରଣ)—ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶନ,-ମୁଖବନ୍ଧ—୬

କାଳରେ ଅନ୍ୟ କାବ୍ୟକାରଙ୍କ ଦ୍ୱାରା ଅନୁସୃତ ହୋଇଛି । ସପ୍ତଦଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ କାବ୍ୟର ମଙ୍ଗଳାଚରଣ ଅଂଶରେ ଶ୍ରୀ ଜଗନ୍ନାଥ ବନ୍ଦନାର ପ୍ରୟୋଗ ପ୍ରାୟ ସର୍ବତ୍ର କରାଯାଇଛି, ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧ ବେଳକୁ ଓଡ଼ିଶାରେ ରାଧାକୃଷ୍ଣ ଉପାସନାର ପ୍ରସାର ଓ ପ୍ରାଧାନ୍ୟ ବୃଦ୍ଧି ହେବା ହେତୁ 'ରାଧାକୃଷ୍ଣ ବନ୍ଦନା' ତଦ୍ଭିନ୍ନ କାବ୍ୟରେ ସଂଯୋଜିତ ହୋଇଛି । *

କବି, ଅଳଙ୍କାର ଓ ରୀତିବାଦୀ କାବ୍ୟ କୌଶଳର ଗୁରୁ-ଭାରରୁ ଆପଣା କାବ୍ୟ ଲେଖାକୁ ଯଥା ସମ୍ଭବ ମୁକ୍ତ ରଖି କାଳ୍ପନିକ ଓ ପୌରାଣିକ--ଉଭୟ କାବ୍ୟ-କର୍ମର ପଥିକୃତ ଉଦ୍ୟମ କରିଛନ୍ତି । ମିଳନାନ୍ତକ କାବ୍ୟ-ରଚନା, ଭାରତୀୟ କାବ୍ୟ-ସାଧନାର ଏକ ପ୍ରଥାବଦ୍ଧ ରୀତି । କବି, ସେହି ମାର୍ଗର ପଥିକ । ତେଣୁ 'କଳ୍ପଲତା' କାବ୍ୟଟି ହେଉଛି ମିଳନାନ୍ତକ । କଥା-ବସ୍ତୁ ସଂଘଟନାରେ କବି, ପ୍ରାଚ୍ୟରୀତି ଅବଲମ୍ବନ କରିଛନ୍ତି । ପ୍ରାକୃତ ଓ ଅପଭ୍ରଂଶ କାବ୍ୟ ଜଗତରୁ ପ୍ରେରଣା ନେଇଛନ୍ତି । ସୁତରାଂ ନାନା ଦିଗରୁ ବିଚାର କଲେ ମନେହୁଏ—କବିଙ୍କର କାବ୍ୟ-ତତ୍ତ୍ୱ, ପ୍ରଚଳିତ ପ୍ରାଚ୍ୟ ପଦ୍ଧତିର ଅନୁଗାମୀ ହୋଇଛି ।

---

* ଶ୍ରୀ କେଦାର ନାଥ ମହାପାତ୍ର—ସମ୍ପାଦିତ 'କଳ୍ପଲତା' କାବ୍ୟର ମୁଖବନ୍ଧ ପୃଷ୍ଠା—୧୮, ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗ ଦ୍ୱାରା ପ୍ରକାଶିତ [୧୯୬୧] ।

# କବିଙ୍କ କାବ୍ୟକୃତିରେ ଅପଭ୍ରଂଶ ସାହିତ୍ୟର ପ୍ରଭାବ

ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ସାହିତ୍ୟର ଶିଳ୍ପ ପ୍ରକରଣ ଅନୁସରଣରେ ଓଡ଼ିଶା ଅଧିକେ କବି ଅର୍ଜ୍ଜୁନ ଦାସଙ୍କର କାବ୍ୟାଂଶ ଗଠିତ ହୋଇଥିବା ମନେହୁଏ । ସଂସ୍କୃତ ସାହିତ୍ୟର ଶିଳ୍ପାଦର୍ଶ ଥିଲା ପ୍ରାଚୀନ କାବ୍ୟକାର ମାନଙ୍କର ପ୍ରେରଣା କେନ୍ଦ୍ର । କାବ୍ୟ ସଂଯୋଜନାର ମୌଳିକ ସୂତ୍ର ସବୁ ସେଇ ଭୂମିରୁ ସେମାନେ ଆହରଣ କରିଥିଲେ । ସଂସ୍କୃତ ପୁରାଣ-ଗ୍ରନ୍ଥ ଠାରୁ ପୌରାଣିକ କାବ୍ୟ ଗଠନର କାରୁକଳା ସେମାନେ ପ୍ରାୟ ଆହରଣ କରିଥିଲେ । ରସ ପରିବେଷଣ, ପଦବନ୍ଧ ବିନ୍ୟାସ, ଅଳଙ୍କାର ସମାବେଶ, ଚରିତ୍ର ସଜ୍ଜା ଇତ୍ୟାଦି ଏହି ସୂତ୍ରରୁ ସେମାନଙ୍କ ଲିଖନ କୌଶଳ କ୍ଷେତ୍ରକୁ ପ୍ରବେଶ କରିଥିଲା । ଅପଭ୍ରଂଶ ସାହିତ୍ୟରେ ପୁରାଣ, ମହାକାବ୍ୟ, ଖଣ୍ଡକାବ୍ୟ, ମୁକ୍ତକକାବ୍ୟ ଆଦିର ଦୃଷ୍ଟାନ୍ତ ମିଳୁଥିଲା । ପୁରାଣ, ମହାକାବ୍ୟ ସବୁ ସଂସ୍କୃତ ଶୈଳୀ ଅବଲମ୍ବନରେ ଲିଖିତ ହେଉଥିଲା । ସ୍ଥଳ ବିଶେଷରେ ସଂସ୍କୃତ ଶ୍ଳୋକ, ଶୈଳୀର ସଂଯୋଜନ ମଧ୍ୟ ଦୃଷ୍ଟି ଗୋଚର ହେଉଥିଲା; ଯେପରି ମହାକବି ସ୍ୱୟମ୍ଭୁ (ଖ୍ରୀ. ୭୮୩ ଆନୁମାନିକ) ଙ୍କର 'ପଉମ ଚରିଓ' ମହାକାବ୍ୟରେ ଯତ୍ରତତ୍ର ସଂସ୍କୃତ ବହୁଳା ଶୈଳୀର ପ୍ରୟୋଗ ପରିଲକ୍ଷିତ ହୁଏ । ଏଥିରେ ରାମ-କଥା ବର୍ଣ୍ଣନ ଜୈନ ଧର୍ମାନୁମୋଦିତ ମାର୍ଗରେ କରାଯାଇଛି । ଏହାଙ୍କ ପୂର୍ବରୁ ସଂସ୍କୃତ ଓ ପ୍ରାକୃତରେ ଜୈନ ରାମାୟଣ ରଚିତ ହୋଇଥିଲା । ରବିଷେଣାଚାର୍ଯ୍ୟ ସଂସ୍କୃତରେ 'ପଦ୍ମ ପୁରାଣ' ଏବଂ ବିମଳ ସୁରି, ପ୍ରାକୃତ ଭାଷାରେ 'ପଉମ ଚରିଓ' ରଚନା କରିଥିଲେ । ମହାକବି ସ୍ୱୟମ୍ଭୁ, ଏମାନଙ୍କଠାରୁ କିଛି ଋଣ

ଗ୍ରହଣ କରିଥିଲେ ମଧ୍ୟ ସ୍ଥାନେ ସ୍ଥାନେ ସ୍ୱାତନ୍ତ୍ର୍ୟ ଦର୍ଶାଇଥିଲେ । ଏଇ ସ୍ୱାତନ୍ତ୍ର୍ୟ ମୁଖ୍ୟତଃ ସମ୍ପ୍ରଦାୟଗତ । ରବିଷେଣାଚାର୍ଯ୍ୟ ଥିଲେ ଦିଗମ୍ବର ଜୈନ; ବିମଳ ସୁରି ଥିଲେ ଶ୍ୱେତାମ୍ବର ଜୈନ; କିନ୍ତୁ ସ୍ୱୟଂମ୍ଭୂଙ୍କ ସଂପ୍ରଦାୟ ଥିଲ 'ଯାପନୀ' ଏକ ଉଦାର ଦୃଷ୍ଟିସଂପନ୍ନ ଧାର୍ମିକ ଶାଖା । ସଂପ୍ରଦାୟାନୁସାରୀ ହୋଇ କବି କୁଳ ରାମଚରିତ ବର୍ଣ୍ଣନା କରିଥିଲେ ମଧ୍ୟ ବିଶେଷ ବିଶେଷରେ ରାମଚନ୍ଦ୍ରଙ୍କୁ ଅଲୌକିକ ପୁରୁଷ ରୂପେ ଉତ୍‌ଥାପିତ ନକରି ମାନବୀୟ ରୂପରେ ଚର୍ଚ୍ଚିତ କରିଛନ୍ତି । ଅଲୌକିକତା ଓ ମାନବୀୟତାର ସମନ୍ୱୟ ସାଧିତ ହୋଇଛି ପ୍ରାକୃତ-ଅପଭ୍ରଂଶ ମହାକାବ୍ୟ ମାନଙ୍କରେ ; ସେହିପରି କୌଶଳ ଅବଲମ୍ବିତ ହୋଇଛି ଅର୍ଜୁନ ଦାସଙ୍କର 'ରାମ ବିଭା' କାବ୍ୟରେ । ଏହା ପାରମ୍ପରିକ କବି-କୌଶଳର ପ୍ରଭାବ ଓ ପ୍ରୟୋଗ ପରି ଅନୁମିତ ହୁଏ ।

ପ୍ରାକୃତ-ଅପଭ୍ରଂଶ କବିଗଣ, କାବ୍ୟାରମ୍ଭରେ ଦେବସ୍ତୁତି, ବିଷୟ ବସ୍ତୁ ନିର୍ଦ୍ଦେଶ, କବି କଣ୍ଠର ବିନୟୋକ୍ତି, ସଜ୍ଜନ ବନ୍ଦନ, ଦୁର୍ଜ୍ଜନ ନିନ୍ଦା, ବିଷୟ ବିନ୍ୟାସ କ୍ରମରେ ଦେଶ-ନଗରର ବର୍ଣ୍ଣନା, ଋତୁ ବର୍ଣ୍ଣନା, ଅରଣ୍ୟ-ଉପବନ,ନଦୀ ସରୋବର ଇତ୍ୟାଦିର ବର୍ଣ୍ଣନା ପ୍ରଦାନ କଲ ପରି ଅର୍ଜୁନ ଦାସ ସେହି ଶୈଳୀର ପଥାନୁସରଣ କରିଛନ୍ତି । 'ରାମ ବିଭା' ପୌରାଣିକ କାବ୍ୟ ଏବଂ 'କଳ୍ପଲତା' କାଳ୍ପନିକ କାବ୍ୟରେ ଏହାର ଦୃଷ୍ଟାନ୍ତ ପ୍ରଚୁର ।

ଅପଭ୍ରଂଶ ଚରିତ କାବ୍ୟ ମାନଙ୍କରେ ଯୁଦ୍ଧ ଓ ପ୍ରେମର ସମନ୍ୱୟ, ପ୍ରେମର ଅବଲମ୍ବନ ସ୍ୱପ୍ନ ବା ଚିତ୍ର ଦର୍ଶନ, ମୁନି ବା ଜଙ୍ଗମଙ୍କଠାରୁ ପୁନର୍ଜନ୍ମର ବୃତ୍ତାନ୍ତ ଶ୍ରବଣ, ଅଲୌକିକ ଶକ୍ତିଲାଭ,

କୌଣସି ବ୍ରତ ବା ସାଧନା ଦ୍ୱାରା ଅଲୌକିକ ସିଦ୍ଧି ଲାଭ, ନାୟକ-ନାୟିକାଙ୍କର ପ୍ରଥମ ଦର୍ଶନ, ଅନ୍ତଃପୁରରେ ମିଳନ, ପତି-ପତ୍ନୀ ସମ୍ବନ୍ଧ, ପୂର୍ବଜନ୍ମ ପ୍ରସଙ୍ଗ ସ୍ମରଣ, ନାୟକ ନାୟିକାଙ୍କର ଜଳକ୍ରୀଡ଼ା, ଉପବନ ବିହାର, କେହି କାପାଳିକ ଦ୍ୱାରା ମନ୍ତ୍ରଦୀକ୍ଷା ଗ୍ରହଣ, ଜଳ-କ୍ରୀଡ଼ା ଅବସ୍ଥାରେ ନାଗକନ୍ୟା ବା କୁମାରଙ୍କ ଦ୍ୱାରା ଅପହରଣର ବୃତ୍ତାନ୍ତ ଇତ୍ୟାଦି ପ୍ରସଙ୍ଗ କ୍ରମରେ ପରମ୍ପରାଗତ ଶୈଳୀରେ କଥିତ ହୋଇଥାଏ । ତଦନୁରୂପ ଚରଣ କବି ଅର୍ଜୁନ ଦାସଙ୍କର କାଳ୍ପନିକ କାବ୍ୟ 'କଳ୍ପଲତା'ରେ ପରିଲକ୍ଷିତ ହେଉଥିବାରୁ ମନେହୁଏ କବି ପରମ୍ପରା ଅନୁସରଣରେ ଆପଣା କାବ୍ୟ କଥାର ପରିକଳ୍ପନା କରିଛନ୍ତି ।

ଜୈନ ପୁରାଣ ସୂତ୍ରରୁ ଅପଭ୍ରଂଶ ମହାକାବ୍ୟର କଥାବସ୍ତୁ ସଂଗୃହୀତ ହେବାପରି ପୁରାଣ ଉପ୍ରଙ୍ଗରୁ ରାମ ବିଭାର କଥାବସ୍ତୁ ଏବଂ ରୋମାନ୍ସ ଧର୍ମୀ କାଳ୍ପନିକ ଆଖ୍ୟାୟିକା ଆଶ୍ରୟରେ 'କଳ୍ପଲତା'ର କଥାବସ୍ତୁ ପରି ଗଠିତ । ଏହା ଅପଭ୍ରଂଶ କାବ୍ୟ-କୌଶଳ ସୁଲଭ । ଅପଭ୍ରଂଶ ଖଣ୍ଡକାବ୍ୟ ବା ଚରିତ କାବ୍ୟ— ଣାୟ କୁମାର ଚରିଅ, ଜସହର ଚରିଅ, ଜମ୍ବୁ ସ୍ୱାମୀ ଚରିଅ, ସୁଲୋଚନା ଚରିଅ, ସନତ୍ କୁମାର ଚରିଅ ଇତ୍ୟାଦି ବିବିଧ ଚରିତ କାବ୍ୟରେ ଏହି ପଦ୍ଧତିର ବ୍ୟାପକ ଅନୁସରଣ ପରିଦୃଷ୍ଟ ହୁଏ । ପ୍ରାଚୀନ ଭାରତୀୟ ଭାଷା ସାହିତ୍ୟରେ ଲିଖିତ ନାନାଦି ଖଣ୍ଡକାବ୍ୟ ବା ଆଖ୍ୟାୟିକା କାବ୍ୟ, ଅପଭ୍ରଂଶ କାବ୍ୟ କୌଶଳର ଅନୁ-ପ୍ରେରଣାରେ କିମ୍ବା ସଂସ୍କୃତ କାବ୍ୟ କଳାର ପ୍ରଭାବରେ ରଚିତ ହୋଇଥିବା ଆଦୌ ଅସମୀଚୀନ ନୁହେଁ ।

# ଓଡ଼ିଆ କାବ୍ୟ ପରମ୍ପରା ଓ କବି ଅର୍ଜୁନ ଦାସ

ଓଡ଼ିଆ ସାହିତ୍ୟରେ ଅର୍ଜୁନ ଦାସ—ଆଖ୍ୟାୟିକା କାବ୍ୟ ସୃଷ୍ଟିର ଆଦ୍ୟ ପ୍ରବର୍ତ୍ତକ । ପୁରାଣ, ଇତିହାସ ଓ କାଳ୍ପନିକ କଥାବସ୍ତୁ ବନ୍ଧଯୋଗରେ ଖଣ୍ଡକାବ୍ୟ ରଚନାର ସୂତ୍ରପାତ ଷୋଡ଼ଶ ଶତାବ୍ଦୀରୁ ଏହାଙ୍କଠାରୁ ଆରମ୍ଭ ହୋଇଥିଲା । ପୁରାଣ ରଚନା ରୀତି ସହିତ ଅଳଂକରଣ କାବ୍ୟରୀତିର ସମନ୍ୱୟ ସ୍ଥାପନ କଲେ କବି ଅର୍ଜୁନ ଦାସ । କାବ୍ୟ କଳେବରରେ ଅଳଙ୍କାର ସମାବେଶ, ରସ ପରିବେଷଣର ଆବଶ୍ୟକତା ଅନୁଭବ କରି ତାହାର ସାଧାରଣ ପ୍ରୟୋଗ ସେ ଆପଣା କାବ୍ୟରେ କରିଥିଲେ । ରୀତିବାଦୀ ଦର୍ଶନର ଏକାନ୍ତ ପ୍ରାଧାନ୍ୟ ସେ ଗ୍ରହଣ କରି ନଥିଲେ । ତାଙ୍କ କାବ୍ୟ ଲେଖାରୁ ଆଳଙ୍କାରିକ ଓ ରୋମାଣ୍ଟିକ କାବ୍ୟ ପରମ୍ପରାର ଅଭ୍ୟୁଦୟ ଘଟିଲା । ବ୍ୟାପକ ଅଳଙ୍କାର ପ୍ରୟୋଗ ନୁହେଁ କି ରସ ସଚେତନତାର ଯଥେଚ୍ଛା ବନ୍ଧଯୋଗ ନୁହେଁ ; ସୀମିତ ଆୟତନ ଏବଂ ସଂଯତ ମତର୍କ ଅଭିବ୍ୟକ୍ତି ଜରିଆରେ ସେ, ରସ ଓ ଅଳଙ୍କାର ସମ୍ମତ କାବ୍ୟଧାରାର ପ୍ରବର୍ତ୍ତନ ପ୍ରତି ମନଯୋଗ କରିଥିଲେ । ଛନ୍ଦୋବଦ୍ଧ କାବ୍ୟ ରଚନାର ଆଦ୍ୟସୂତ୍ର, ଖାଣ୍ଟି ଓଡ଼ିଆ କାବ୍ୟ ପରିକଳ୍ପନାର ଉଦ୍ୟୋକ୍ତା, କବି ଅର୍ଜୁନ ଦାସଙ୍କର ବୈଶିଷ୍ଟ୍ୟ ଓ ଅବଦାନ ଏହି ଦୃଷ୍ଟିରୁ ବର୍ଣ୍ଣନୀୟ ଯେ ସେ, ପ୍ରାଥମିକ ଅବସ୍ଥାରେ ଓଡ଼ିଆ କାବ୍ୟ ସୃଷ୍ଟିଧାରାର ଭିତ୍ତି ସ୍ଥାପନ କରିଥିଲେ । ପ୍ରାଚୀନ ଓଡ଼ିଆ କାବ୍ୟର ଐତିହ୍ୟ ଏତେ ଐଶ୍ୱର୍ଯ୍ୟମୟ ଓ ବହୁଧା ବିକଶିତ ହେବାରେ ଯତ୍‌କିଞ୍ଚିତ୍ ପରିକଳ୍ପିତ ଦାନ, ଅର୍ଜୁନ ଦାସଙ୍କର ସୃଷ୍ଟି ସାଧନରୁ ମିଳିଥିଲା ।

ପ୍ରାଚୀନ ଓଡ଼ିଆ କାବ୍ୟ ଜଗତ ନାନା ରୂପରେ, ନାନା କିସମରେ ବିକଶିତ ହୋଇଥିଲା । କବିମାନଙ୍କ ସୃଷ୍ଟିରୁ—ପୌରାଣିକ, ଐତିହାସିକ, କାଳ୍ପନିକ କାବ୍ୟ ରଚନା ବ୍ୟତୀତ ଚରିତ କାବ୍ୟ, କିମ୍ବଦନ୍ତୀ ଆଖ୍ୟାୟିକା କାବ୍ୟ, ଆଧ୍ୟାତ୍ମିକ ତତ୍ତ୍ୱ ପ୍ରଧାନ କାବ୍ୟ, ଲୀଳା କାବ୍ୟ, ଶାସ୍ତ୍ର କାବ୍ୟ ଇତ୍ୟାଦି ନାନା ବିଷୟ ଓ ବିନ୍ୟାସ-କୌଶଳ ପ୍ରଧାନ କାବ୍ୟ କୃତିର ଉନ୍ମେଷ ଓ ଉତ୍ତରଣ ସାଧିତ ହୋଇଥିଲା । ଏତେ ବୈଚିତ୍ର୍ୟ ଓ ବ୍ୟାପ୍ତିର ଆଦ୍ୟପ୍ରସ୍ଥ ଯେ ଖୁବ୍ ସରଳ, ଆଡ଼ମ୍ବର ହୀନ, ବୈଦଗ୍ଧ ଓ ପାଣ୍ଡିତ୍ୟ-ବିଳାସିତାର ବହୁ ଦୂରରେ—ଏହା ସେକାଳକୁ ଛୁହିଁ ଏବେ ଚିନ୍ତାକଲେ ଆଶ୍ଚର୍ଯ୍ୟ-ଜନକ ବୋଧହୁଏ ନାହିଁକି ? ଏଣୁ ଆଦ୍ୟ ପଥଗୃହୀର ପଦ-ଚିହ୍ନର ସଙ୍କେତକୁ ସ୍ମରଣ ନକରି ପ୍ରାଚୀନ ଓଡ଼ିଆ କାବ୍ୟ ପରମ୍ପରାର କଥା ଚିନ୍ତାକରିବା ବିଡ଼ମ୍ବନା ମାତ୍ର । ଏହି ଗୌରବରେ ଅଭିଷିକ୍ତ କବି ଅର୍ଜୁନ ଦାସ; ଆମ କାବ୍ୟ ସାହିତ୍ୟର ଇତିହାସରେ ଅନ୍ୟତମ ସ୍ମରଣୀୟ ପ୍ରତିଭା ।

